# ବିଦଗ୍ଧକବି ଅଭିମନ୍ୟୁ

ଓ

# ବିଦଗ୍ଧ ଚିନ୍ତାମଣି




ଲେଖକ :

ଅଧ୍ୟାପକ ଶ୍ରୀ ପିତାମ୍ବର ସ୍ୱାଇଁ ଏମ୍. ଏ., ବି. ଇଡ଼.

ଭଦ୍ରକ କଲେଜ









ପ୍ରକାଶକ :

## ଶିକ୍ଷା ସଦନ

ବିଶ୍ୱନାଥ ଗାଳୀ • କଟକ-୨

ପ୍ରଥମ ପ୍ରକାଶ :
ମଇ—୧୯୬୮



ମୁଦ୍ରାକର :
ଶ୍ରୀ ହରେକୃଷ୍ଣ ବେହେରା
ମହାଲକ୍ଷ୍ମୀ ପ୍ରେସ
ସାହେବଯାଦା ବଜାର, କଟକ-୨



ମୂଲ୍ୟ
ଦୁଇଟଙ୍କା

---

Proffessor Sri Pitambar Swain's
"BIDAGDHA KABI ABHIMANYU 'O'
BIDAGDHA CHINTAMANI"
*Price Rs. 2. 00*

# ଓଡ଼ିଆ ସାହିତ୍ୟରେ ରୀତ[redacted]

ଓଡ଼ିଆ ସାହିତ୍ୟକୁ ମୁଖ୍ୟତଃ ତିନୋଟି ଯୁଗରେ [redacted]କରା ଯାଇଅଛି । ତାହା ପ୍ରାଚୀନ, ମଧ୍ୟ ଓ ଆଧୁନିକ ଯୁଗ ନାମରେ ନାମିତ । ଅନେକ ଏହାକୁ ସାହିତ୍ୟର ଲକ୍ଷଣ ଉପରେ ଲକ୍ଷ୍ୟ ରଖି ରୀତିଯୁଗ ବୋଲି କହିଥାନ୍ତି । ଯେଉଁ ଶାସ୍ତ୍ର ବିଭିନ୍ନ ଅଂଶ ଉଦାହରଣଯୁକ୍ତ ଲକ୍ଷଣସହ ପ୍ରକାଶିତ ହୋଇଥାଏ, ତାହା ରୀତିଶାସ୍ତ୍ର । ସଂସ୍କୃତରେ ତାହା ଅଳଙ୍କାର ଶାସ୍ତ୍ର ବା କାବ୍ୟ ଶାସ୍ତ୍ର । ସଂସ୍କୃତ ଅଳଙ୍କାର ଶାସ୍ତ୍ର ପଦ୍ଧତିର ପଦାଙ୍କ ଅନୁସରଣ କରି ଯେଉଁ କାବ୍ୟ ରଚନା କରାଯାଇଥାଏ, ତାହା ରୀତିଶାସ୍ତ୍ର ବା କାବ୍ୟ ଶାସ୍ତ୍ର ନାମରେ ପରିଚିତ । ଏବଂ ଏହିପରି କାବ୍ୟ ଯେଉଁ ସମୟ ମଧ୍ୟରେ ରଚିତ ହୋଇଥିଲା ତାହା ରୀତିଯୁଗ ନାମରେ ନାମିତ । ଓଡ଼ିଆ ସାହିତ୍ୟରେ ଏହି ସଂସ୍କୃତ ଅଳଙ୍କାର ଶାସ୍ତ୍ରର ଲକ୍ଷଣ ଧରି ଯେଉଁ ସମୟ ମଧ୍ୟରେ ବହୁଳ କାବ୍ୟସୃଷ୍ଟି କରାଯାଇଥିଲା, ତାହାକୁ ରୀତି ଯୁଗ ବୋଲି କହନ୍ତି ।

ଓଡ଼ିଆ ସାହିତ୍ୟରେ ଏହି ରୀତିଯୁଗ କେବଳ ଯେ ଏକ ନୂତନ ସୃଷ୍ଟି ତାହା ନୁହେଁ । ଭାରତୀୟ ବିଭିନ୍ନ ଭାଷାରେ ସାହିତ୍ୟର ଏକ ପୁଷ୍କଳ ବିକାଶକୁ ସେହି ସାହିତ୍ୟର ରୀତିଯୁଗ ବୋଲି ବୁଝାଯାଉଅଛି । ଭାରତର ଅଧିକାଂଶ ଭାଷା ଏପରି ସାହିତ୍ୟରେ ଏକଯୁଗର ସ୍ପଷ୍ଟ ମୁଦ୍ରାଙ୍କନ ପରିଲକ୍ଷିତ ହେବାର କାରଣ ଚିନ୍ତାର

ବିଷୟ । ଭାରତୀୟ ସାହିତ୍ୟର ପରଂପରାକୁ ଲକ୍ଷ୍ୟକଲେ ଜଣାଯାଏ ଯେ, ବହୁ ପ୍ରାଚୀନ କାଳରୁ ସାହିତ୍ୟରେ ଏପରି ଏକ ସୃଷ୍ଟି ରହି ଆସୁଅଛି । "Indian incriptions and the antiquity of Indian artifical Poetry" ରେ ବୁହଲର୍ କହୁଛନ୍ତି ଯେ ରୁଦ୍ରଦାମନଙ୍କ ଗିର୍ନାର ଶିଳାଲେଖରେ ଅଳଙ୍କାରଶାସ୍ତ୍ରର ସୂଚନା ମିଳେ । ଜୈନ୍ୟ ଧର୍ମର ପ୍ରସାର କାଳରେ ଯେଉଁ ଜୈନ 'ଚରିତ କଥା' ବା ଚରିତକଥା ରଚନା କରାଯାଇଥିଲା, ଏଥିରୁ ମଧ୍ୟ ଏହି ସୃଷ୍ଟି କାବ୍ୟର କେତେକ ଲକ୍ଷଣର ସନ୍ଧାନ ମିଳେ । ଏତଦ୍‌ବ୍ୟତୀତ କବି ଅଶ୍ୱଘୋଷ, ମହାକବି କାଳିଦାସ, ବାଣଭଟ୍ଟ, ଶ୍ରୀହର୍ଷ, ଭବଭୂତି, ମାଘ ଭଟ୍ଟି, ଉମାପତିଧର, ମୁରାରି ଓ ଭାରବି ପ୍ରଭୃତି କବିମାନେ ଆଳଙ୍କାରିକ କାବ୍ୟମାନ ରଚନା କରିଯାଇଛନ୍ତି । ଏପରିକି ଚତୁର୍ଦ୍ଦଶ ଶତାବ୍ଦୀରେ ଆମ ଉତ୍କଳରେ ତୃତୀୟ ନରସିଂହ ଦେବଙ୍କ ସମୟରେ ବିଦ୍ୟାଧରଙ୍କ 'ଏକାବଳୀ' ଓ ଖ୍ରୀ ୧୫ଶତାବ୍ଦୀ ପ୍ରାରମ୍ଭରେ ବିଶ୍ୱନାଥ କବିରାଜଙ୍କର 'ସାହିତ୍ୟ ଦର୍ପଣ'ପରି ଅଳଙ୍କାର ଶାସ୍ତ୍ର ରଚନା କରାଯାଇ-ଥିଲା ।

ସଂସ୍କୃତ ପଣ୍ଡିତ ତଥା ଆଳଙ୍କାରିକମାନେ କାବ୍ୟର ଲକ୍ଷଣମାନ ସ୍ଥିରକରି ଯାଇଛନ୍ତି । ସେହି ସୂତ୍ରକୁ ଆଣି ବୀଜଗଣିତ କଷିଲାଭଳି କାବ୍ୟରଚନା ସଂସ୍କୃତ ତଥା ପ୍ରାକୃତ ସାହିତ୍ୟରେ ଭରି ଉଠିଲା । ତେଣୁ କାବ୍ୟର ସ୍ୱରୂପକୁ ସୃଷ୍ଟିଯୁଗର କବିମାନେ ଅନୁଧାବନ କରିବାକୁ ଲାଗିଲେ । ମନୁଷ୍ୟ ଶରୀର ଭଳି କାବ୍ୟର ମଧ୍ୟ କଳେବର ଅଛି, ତେଣୁ ଅତି ସଂକ୍ଷେପରେ କହିବାକୁ ଗଲେ ଅର୍ଥ ଯୁକ୍ତ ଶବ୍ଦ, ପ୍ରସାଦ ମାଧୁର୍ଯ୍ୟାଦି ଗୁଣ, ଶ୍ରୁତିକଟୁ ଦୋଷ, ଅନୁପ୍ରାସ, ଉପମା ପ୍ରଭୃତି ଅଳଙ୍କାର ରସ ଇତ୍ୟାଦି ଆତ୍ମାକୁ ନେଇ

କାବ୍ୟର ସୃଷ୍ଟି ହୋଇଥାଏ । ବିଭିନ୍ନ ଆଲଙ୍କାରିକ, କାବ୍ୟର ରୂପ ଭିନ୍ନ ରୂପେ ବର୍ଣ୍ଣନା କରିଛନ୍ତି ।

ବର୍ତ୍ତମାନ ବିଚାର କରାଯାଉ ଯେ ରୀତିଯୁଗୀୟ ପରଂପରାକୁ ରକ୍ଷାକରିପାରି ପ୍ରାକୃତ ଭାଷାରେ ରୀତିକାବ୍ୟ ସୃଷ୍ଟି ହେଲା କାହିଁକି ? ଉତ୍ତରରେ କୁହାଯାଇପାରେ ଯେ ତତ୍କାଳୀନ ଭାରତୀୟ ତଥା ଉତ୍କଳୀୟ ରାଜନୀତିକ ସାମାଜିକ କିମ୍ବା ସାଂସ୍କୃତିକ ପୃଷ୍ଠଭୂମିର ପ୍ରଭାବ ଏହା ଉପରେ ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲା । ଅତି ସଂକ୍ଷେପରେ କହିବାକୁ ଗଲେ, ମୋଗଲ ଶାସନରେ ଭାରତୀୟ ସାମନ୍ତ ରାଜାମାନେ ବଶ୍ୟତା ସ୍ୱୀକାର କଲେ । ଉତ୍କଳରେ ତାହାହିଁ ଘଟିଲା । ଓଡ଼ିଶାରେ ଗଜପତି ରାଜାର ବଂଶଧର ଚିରଦିନ ପାଇଁ ମାଣ୍ଡଳିଆ ହୋଇ ରହିଗଲେ । ଉତ୍କଳର ଅନ୍ୟାନ୍ୟମାନେ ମଧ୍ୟ ହୀନବୀର୍ଯ୍ୟ ହୋଇପଡ଼ିଲେ । ଏ ପରିସ୍ଥିତିରେ ରାଜତ୍ୱ ନଥାଇ ରାଜା ହେଲେ ଯାହା ପରିଣତ ହେବାର କଥା ତାହାହିଁ ଘଟିଲା । କୌଣସି ଦାୟିତ୍ୱ ନଥାଇ ବିପୁଳ ସମ୍ପତ୍ତିର ଉତ୍ତରାଧିକାରୀ ହୋଇ ଏହି ଅଧୀନ ରାଜାମାନେ ବିଳାସ ବ୍ୟସନରେ ଜୀବନ ଯାପନ କରିବାକୁ ଲାଗିଲେ ଏବଂ ମୋଗଲ ଶାସନର ଅବସାନ ସମୟରେ ଇଂରେଜ ତଥା ଇଉରୋପୀୟ ମାନଙ୍କର ଆଗମନ ଏମାନଙ୍କୁ ଅଧିକ ସୁହାଇଲା ସେମାନେ । ବହୁପରିମାଣରେ ବିଳାସ ଦ୍ରବ୍ୟ ଆଣି ଏ ଦେଶରେ ବିକ୍ରୟ କରିବାକୁ ଲାଗିଲେ । ଫଳରେ ରାଜାମାନଙ୍କର ବିଳାସବ୍ୟସନ ପୂର୍ଣ୍ଣ ଜୀବନ ଯାପନରେ ଏହି ଦ୍ରବ୍ୟ ଘୃତାହୁତିପରି କାର୍ଯ୍ୟ କଲା । ଏହା ଫଳରେ ଭାରତର ପୌରାଣିକ କାହାଣୀ ଭଳି ଯଦିଓ ଅତୀତ ପରଂପରା କେବଳ ଲୋକମୁଖରେ ଓ ଗ୍ରନ୍ଥ ମଧ୍ୟରେ ଆବଦ୍ଧ ହୋଇ ରହିଗଲା । ମାତ୍ର ରାଜହଂସପୁର ସୁରା

ଓ ଆଙ୍ଗୀର ମଧୁର ମିଳନଗୀତ ହୋଇ ଉଠିଲା । ରାଜା ସ୍ତ୍ରୈଣ, ବେଶ୍ୟାସକ୍ତ, କାମିନୀ କାଞ୍ଚନ ମୋହରେ କେବଳ ବୁଡ଼ି ରହିଲେ । ଦେଶର ସୁନ୍ଦରୀ ତରୁଣୀ ମାନଙ୍କର ରାଜଭୋଗ ବ୍ୟତୀତ ଅନ୍ୟ କୌଣସି ସାର୍ଥକତା ଥାଇପାରେ ବୋଲି ସେମାନଙ୍କର ଧାରଣା ନଥିଲା । ରାଜାଙ୍କର ପତ୍ନୀ ଆଉ ପତ୍ନୀହୋଇ ରହିଲେ ନାହିଁ । ସାମାନ୍ୟ ଇତର ରକ୍ଷିତାଜନ କେବଳ ଉପଭୋଗର ସାମଗ୍ରୀ ହୋଇ ରହିଲେ । ରାଜାଙ୍କୁ ସନ୍ତୁଷ୍ଟ କରି ନିଜର ଯୌନ କ୍ଷୁଧା ଚରି-ତାର୍ଥ କରିବା ଓ ନିଜର ସ୍ୱାର୍ଥସାଧନ କରିବାପାଇଁ ରାଜାଙ୍କୁ ଆକୃଷ୍ଟ କରିବା ହେଲା ସେମାନଙ୍କର ଦୈନନ୍ଦିନ କାର୍ଯ୍ୟ । ବେଶ ବିରଚନରେ ଅଧିକାଂଶ ସମୟ ଅତିବାହିତ କରି ଏହି ରାଣୀରୂପୀ ରମଣୀଗଣ ନିଜର ଉଚ୍ଛୃଙ୍ଖଳ ଜୀବନକୁ ଅତିବାହିତ କରୁଥିଲେ । ଏଣେ ରାଣୀହଂସପୁର ପତ୍ନୀମଣ୍ଡଳୀର ମନସ୍କାମ ପୂରଣ କରିବାର ଶକ୍ତି ରାଜାଙ୍କର ନଥିଲା, ତେଣୁ ରାଣୀହଂସପୁର ହୋଇ ଉଠିଲା ବ୍ୟଭିଚାରର ଏକ ତମିର ତୀର୍ଥ ।

ଭାରତୀୟ ତଥା ଉତ୍କଳର ମଧ୍ୟଯୁଗୀୟ ପୃଷ୍ଠଭୂମିକୁ ଲକ୍ଷ୍ୟକଲେ ଆମେ ଦେଖିବାକୁ ପାଉଁ ଜାତୀୟ ଜୀବନରେ ନୈରାଶ୍ୟ ତଥା ନୈତିକ ଅଧୋଗତି । ଏହା ହେଲେ ମଧ୍ୟ ଏହିଭଳି ଏକ ପୃଷ୍ଠଭୂମିରେ ଗଢ଼ି ଉଠିଲା ଏକ ଜାତୀୟ ସାହିତ୍ୟ । ହିମାଚଳ-ଠାରୁ ସୀମାଚଳ ଓ ସିନ୍ଧୁଠାରୁ ସାଂପୋ ପର୍ଯ୍ୟନ୍ତ ଅଧିକାଂଶ ରାଜାମାନଙ୍କର ଦରବାର ହୋଇଉଠିଲା ସାରସ୍ୱତ ସାଧନାର ପୀଠ । ଆଡ଼ମ୍ବର ପ୍ରିୟ ସାହାଜାଦୀ ଜୀବନ ନେଇ କାମପରାୟଣ ରାଜା ମହାରାଜା ଓ ସମ୍ଭ୍ରାନ୍ତଗୋଷ୍ଠୀ ଶୃଙ୍ଗାର ରସରେ ନିମଜ୍ଜମାନହେଲେ ଓ ଭାରତୀୟ ସଂସ୍କୃତ ସାହିତ୍ୟର ପରଂପରା

ରଖି ଶୃଙ୍ଗାରିକାବ୍ୟ ସୃଷ୍ଟି କରିବାକୁ ନିଜର ଦରବାରୀ କବିମାନଙ୍କୁ ନିର୍ଦ୍ଦେଶ ଦେଲେ । ଏପର୍ଯ୍ୟନ୍ତ ସଂସ୍କୃତ ଦେବ ଭାଷା, ଏହି ଭାଷା ମାଧ୍ୟମରେ ହିଁ ଉନ୍ନତ କାବ୍ୟ ମହାକାବ୍ୟ ସୃଷ୍ଟି କରାଯାଇପାରେ କିମ୍ବା ଉନ୍ନତଭାବ ପ୍ରକାଶ କରାଯାଇପାରେ, ଏହିପରି ଏକ ମନୋଭାବ ପ୍ରଚଳିତ ହୋଇ ଆସୁଥିଲା । ତେଣୁ ପ୍ରାକୃତ ଭାଷାରେ କାବ୍ୟ ସୃଷ୍ଟି କରିବାକୁ କବି ସାହସ କରି ପାରୁନଥିଲେ । ମାଟିର ମହାକବି ଶାରଳା ଦାସ ଭଳି ବ୍ୟକ୍ତି ମହାଭାରତ ରଚନା କରି ନିଜେ ସର୍ଜ୍ଜକ ବୋଲି ସାହସ କରି ପାରିଲେ ନାହିଁ । ଶାରଳା ଦାସ ଲେଖିଲେ "କହିଲେ ସେ ଯେଣୁ, କରରେ ମାନ ମୁଁ ଲେଖିଲି ତେଣୁ" ଅର୍ଥାତ ଦେବୀ ଶାରଳା ଯାହା କହୁଛନ୍ତି ତାହା ମୁଁ ମାତ୍ର ତାହା ଲେଖିଛି । ବଳରାମ ଦାସଙ୍କ ଭଳି ଜାତୀୟ ମହାକବି ଦାଣ୍ଡି ରାମାୟଣ ଲେଖି ପ୍ରଶଂସା ଭାଜନ ହୋଇ ପାରିଲେ ନାହିଁ । ବେଦାନ୍ତ ଚର୍ଚ୍ଚା କରି ପାରିବାର ଶକ୍ତି ତାଙ୍କର ନାହିଁ ବୋଲି ମୁକ୍ତିମଣ୍ଡପର ବ୍ରାହ୍ମଣ ମାନଙ୍କ ଦ୍ୱାରା ଉପହସିତ ହେଲେ । ତାଙ୍କୁ କୁହାଗଲା "ତୁ ସୋମନାଥ ଶୁଦ୍ର ସୁତ, ତୁ କହୁ ବେଦାନ୍ତ ଚିନ୍ତି" । ଜଗନ୍ନାଥ ଦାସଙ୍କ ଭାଗବତ ଭଳି ମହାକାବ୍ୟକୁ ତେଲି ଭାଗବତ ବୋଲି କହି ଉପେକ୍ଷା କରାଗଲା । ସଂସ୍କୃତ ସାହିତ୍ୟ ତଥା ସଂସ୍କୃତଜ୍ଞ ପଣ୍ଡିତ ଏଭଳି ପ୍ରଭାବ ବିସ୍ତାର କରିଥିଲେ ଯେ ଏହା ଭିନ୍ନ ସାହିତ୍ୟ ବ୍ୟତୀତ ଅନ୍ୟ ସାହିତ୍ୟ ହୋଇପାରିଲା ନାହିଁ । ସଂସ୍କୃତ ସାହିତ୍ୟ ମଧ୍ୟରେ ପ୍ରବେଶ କରି କାବ୍ୟ ରସାମୃତ ପାନ କରିବା ଜନ ସାଧାରଣଙ୍କ ପକ୍ଷରେ ଅସମ୍ଭବ ହେଲା । ଏହିପରି ଏକ ଅକଥନୀୟ ଅଭାବ ଅନୁଭୂତ ହେଉଥିଲା ବେଳେ ଭାରତୀୟ ପ୍ରାକୃତ ଭାଷାର ସୃଷ୍ଟି ହେଲା । ଗୀତିକାବ୍ୟ ସଂସ୍କୃତ କାବ୍ୟମାନଙ୍କର ସମକକ୍ଷ ହୋଇ ସଂସ୍କୃତ ସାହିତ୍ୟର ପରମ୍ପରା ପ୍ରତି ସ୍ପର୍ଦ୍ଧାରେ ସୃଷ୍ଟି ହୋଇ ପ୍ରସାର ଲାଭକଲା ।

ସଂସ୍କୃତ କବିମାନେ କାବ୍ୟଆତ୍ମାର ଉତ୍କର୍ଷ ଅପେକ୍ଷା ଶରୀର ଅଳଙ୍କାର ଉପରେ ବିଶେଷ ପ୍ରାଧାନ୍ୟ ଦେଇଛନ୍ତି । ଓଡ଼ିଆ ସାହିତ୍ୟରେ ସଂସ୍କୃତ ରୀତିଯୁଗ ପରଂପରା ରକ୍ଷାକରିବା ସଙ୍ଗେ ସଙ୍ଗେ ଏକ ସ୍ୱତନ୍ତ୍ର ଲକ୍ଷଣ ମଧ୍ୟ ଦେଖାଦେଲା । ତାହା ଏକ ବ୍ୟତିକ୍ରମ କହିଲେ ଅତ୍ୟୁକ୍ତି ହେବନାହିଁ । ସଂସ୍କୃତ ସାହିତ୍ୟ କିମ୍ବା ଓଡ଼ିଆ ରୀତିଯୁଗ ପୂର୍ବ ସାହିତ୍ୟ କହ, ଏପର୍ଯ୍ୟନ୍ତ କେବଳ କାବ୍ୟ ଓ ମହାକାବ୍ୟ ମାନଙ୍କରେ ଅତିମାନବ ମାନଙ୍କୁ ଚରିତ୍ର ରୂପେ ବ୍ୟବହାର କରାଯାଉଥିଲା । ମାନବ, ମହାମାନବ ଓ ଅତିମାନବ ମାନଙ୍କ ମଧ୍ୟରୁ କାବ୍ୟର ମୁଖ୍ୟ ନାୟକରୂପେ ଦେଖାଦେଇଥିଲେ ଏହି ଅତିମାନବ କିମ୍ବା ମହା ମାନବମାନେ । ରାମ, କୃଷ୍ଣ, ପାଣ୍ଡବ, କୌରବ ପ୍ରଭୃତି, ଅଧିକାଂଶ ପୌରାଣିକ କାବ୍ୟର ଚରିତ୍ର ରୂପେ ବର୍ଣ୍ଣିତ ହେଉଥିଲେ । ଖୁବ୍ କମ୍ କାବ୍ୟରେ ଏମାନଙ୍କମଧ୍ୟରୁ ରାଜାମାନଙ୍କୁ କେବଳ ଚରିତ୍ର ରୂପେ ବ୍ୟବହାର କରାଯାଇଛି । ଏ କ୍ଷେତ୍ରରେ ମଧ୍ୟ ପୌରାଣିକ ଦୃଷ୍ଟିକୋଣ ନେଇ ବିଚାର କରାଯାଇଛି । କିନ୍ତୁ ଓଡ଼ିଆ ସାହିତ୍ୟର ରୀତିଯୁଗରେ ବହୁକ୍ଷେତ୍ରରେ ଏହି ପୌରାଣିକ ଚରିତ୍ରକୁ ବାଦ ଦେଇ କାବ୍ୟ ରଚନା କରାଯାଇଛି । ତେଣୁ ପୌରାଣିକ ଚରିତ୍ର ଗୁଡିକୁ ବାଦଦେଇ କେବଳ ମାନବୀୟ ରାଜାରାଣୀ ଓ ସାଧାରଣ ସମାଜର କେତେକ ବ୍ୟକ୍ତି ବିଶେଷଙ୍କୁ ନେଇ ରୀତିଯୁଗରେ କାଳ୍ପନିକ କାବ୍ୟ ସୃଷ୍ଟି ହେବା ଓଡ଼ିଆ ରୀତିଯୁଗ ସାହିତ୍ୟର ଏକ ବିଶେଷ ଲକ୍ଷଣ । ଓଡ଼ିଆ ସାହିତ୍ୟରେ ଏହି କାଳ୍ପନିକ କାବ୍ୟ ଯେଉଁ ପରିମାଣରେ ସୃଷ୍ଟି ହୋଇ ଥିଲା, ସମଗ୍ର ଭାରତୀୟ ସାହିତ୍ୟରେ ସେହି ଯୁଗରେ ସେହି ପରିମାଣରେ ସୃଷ୍ଟି ହୋଇପାରିଥିଲା କି ନା ସନ୍ଦେହ । ତେଣୁ

ପୌରାଣିକ ଚରିତ୍ରକୁ ତ୍ୟାଗକରି ଯେ ସ୍ୱତନ୍ତ୍ର କାବ୍ୟ ରଚନା କରାଯାଇପାରେ ଏହି ଧାରଣାଦେଇଥିଲା ପ୍ରଥମେ ଓଡ଼ିଆ ସାହିତ୍ୟର ରୀତିଯୁଗ । ତେଣୁ ଓଡ଼ିଆ ସାହିତ୍ୟରେ ନରସିଂହଙ୍କର 'ପରିମଳା' ରଘୁନାଥ ହରିଚନ୍ଦନଙ୍କର 'ଲୀଳାବତୀ, ଲୋକନାଥଙ୍କର 'ସର୍ବାଙ୍ଗ ସୁନ୍ଦରୀ', ଚନ୍ଦ୍ରକଳା, ରସକଳା, ଧନଞ୍ଜୟ ଭଞ୍ଜଙ୍କର 'ତ୍ରିପୁର ସୁନ୍ଦରୀ, ମଦନ ମଂଜରୀ, ଅନଙ୍ଗରେଖା, ଦିଶ୍ୱକମଙ୍କର 'କନକଲତା, ପ୍ରଭୃତି କାଳ୍ପନିକ କାବ୍ୟ ଉଲ୍ଲେଖଯୋଗ୍ୟ । କିନ୍ତୁ ଓଡ଼ିଆ ସାହିତ୍ୟରେ ଏହି କାଳ୍ପନିକ କାବ୍ୟ ସୃଷ୍ଟି ଉତ୍କର୍ଷର ଚରମ ସୀମାରେ ଉପନୀତ ହୋଇଥିଲା କେବଳ କବିସମ୍ରାଟ ଉପେନ୍ଦ୍ର ଭଂଜଙ୍କ ଦ୍ୱାରା । ତାହାଙ୍କର 'ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି ରସିକ ହାରାବଳୀ, ରସଲେଖା, ସୁବର୍ଣ୍ଣ ରେଖା, ଭାବବତୀ, ଚନ୍ଦ୍ରକଳା, କାମକଳା, ମୁକ୍ତାବତୀ, ଶୋଭାବତୀ କଳାବତୀ, ଇଚ୍ଛାବତୀ, ତ୍ରୈଲୋକ୍ୟ ମୋହିନୀ, ଚନ୍ଦ୍ରରେଖା, ପ୍ରେମଲତା, ମନୋରମା, ଶଶିରେଖା, ଚନ୍ଦ୍ରରେଖା, ପ୍ରଭୃତି କାଳ୍ପନିକ କାବ୍ୟ ରୀତିଯୁଗରେ ଏକ ଅମର ସୃଷ୍ଟି ।

ଓଡ଼ିଆ ରୀତିକାବ୍ୟ ମାନଙ୍କରେ ଧ୍ୱନ୍ୟାତ୍ମକ କାବ୍ୟର ବହୁଳ ବ୍ୟବହାର ଦେଖାଯାଏ । ଏହି ଧ୍ୱନି ରୀତିକାବ୍ୟ ମାନଙ୍କରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଯାହାଦ୍ୱାରା ଅର୍ଥ ପରିସ୍ଫୁଟ ହୁଏ ତାହା ଧ୍ୱନିସ୍ଫୋଟ । ପରା, ପଶ୍ୟନ୍ତୀ, ମଧ୍ୟମା ଓ ବୈଖରୀକୁ ନେଇ 'ବାକ୍' ଚତୁର୍ଭାଗରେ ବିଭକ୍ତ । ଆମେ ସାଧାରଣ ମନୁଷ୍ୟ ଏହି ବୈଖରୀ 'ବାକ୍' ବ୍ୟବହାରକରୁ । ଶରୀରର ବିଭିନ୍ନ ସ୍ଥାନରେ ବାୟୁ ବାଧାପ୍ରାପ୍ତହୋଇ କଣ୍ଠନଳୀ ମାଧ୍ୟମରେ ପ୍ରକାଶିତ ହେଲେ ତାହା ବୈଖରୀ ବାକ୍ ବା ଧ୍ୱନି । ଏହାନତ୍ୟ ଓ

ଅଖଣ୍ଡ । ଏହି ଧ୍ୱନି ତତ୍ତ୍ୱ ଦ୍ୱାରା ବର୍ଣ୍ଣ, ପଦ, କାବ୍ୟ ଓ କାବ୍ୟ ପ୍ରବନ୍ଧର ଅର୍ଥ ପ୍ରକାଶ ପାଇଥାଏ । ଧ୍ୱନିବାଦୀ ଆନନ୍ଦ ବର୍ଦ୍ଧନ ଶୃଙ୍ଗାର ମିଶ୍ରିତ ଧ୍ୱନ୍ୟାତ୍ମକ କାବ୍ୟରେ ରୂପକାଦି ଅଳଙ୍କାର ସାର୍ଥକତା ଲଭନ୍ତରେ ବୋଲି ମତବ୍ୟକ୍ତ କରିଛନ୍ତି । ଯଥା—ଧ୍ୱନ୍ୟାତ୍ମଭୂତେ ଶୃଙ୍ଗାରେ ସମୀକ୍ଷ୍ୟ ବିନିବେଶିତଃ ରୂପକାଦି ଅଳଙ୍କାର ବର୍ଗ ଏତି ଯଥାର୍ଥତାମ୍ ।''

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସେହିପରି ଲାବଣ୍ୟବତୀରେ ଲେଖିଛନ୍ତି "ପଦ ସରଳ ଧ୍ୱନିରେ ମାନସ ମୋହିବ; ଅର୍ଥୀଜନ ପ୍ରକାରକୁ ଆନନ୍ଦ ହୋଇବ'' ଅର୍ଥାତଃ ପଦ ସରଳ ହେଲେହେଁ ବ୍ୟଞ୍ଜନାବୃତ୍ତିରେ ଅସ୍ପଷ୍ଟାର୍ଥ ପ୍ରଦାନକରି ପଣ୍ଡିତ ମାନଙ୍କୁ ଆନନ୍ଦ ଦେବ । ସେଥିପାଇଁ ତାଙ୍କର ବିଭିନ୍ନ କାବ୍ୟରେ ଏହି ଧ୍ୱନିଯୁକ୍ତ ପଦ ଦେଖିବାକୁ ମିଳେ । ଲାବଣ୍ୟବତୀର ପଞ୍ଚମ ଛାନ୍ଦଟି ଏହିପରି ଏକଛାନ୍ଦ ॥ ଲାବଣ୍ୟ ବତୀ ବସନ୍ତଋତୁରେ ଉପବନ ବିହାରକରି ସଖିମାନଙ୍କ ସହିତ ଛଳୋକ୍ତି ମାନ କହୁଛି ।

"କହେ ଏକନାରୀ ବିଶେଷ ସୁନାରୀ
ଏ ଦେଶରେ ବାସକରିଛି ।
ଭୃଙ୍ଗକ ପୁରୁଷ ଚଞ୍ଚଳ ମାନସ
ଏହି ତହିଁ ପୂର୍ଣ୍ଣ ଯାଉଛି ।
ତହିଁକି ଛଳି କହିଲ କେଉଁ ସଖୀ,
ମହାବିବେକ ହୋଇଣ କପାଇଁ ମଧୁପ ନାମକୁ ବହୋଇ''

ଏହିପରି ରୀତିଯୁଗର କାବ୍ୟମାନଙ୍କରୁ ବହୁ ଉଦାହରଣ ଦିଆଯାଇପାରେ ।

ଅଲଙ୍କାରବହୁଳତା ବା ଅଲଙ୍କାର ପ୍ରିୟତା ରୀତିଯୁଗୀୟ କାବ୍ୟମାନଙ୍କର ଅନ୍ୟ ଏକ ପ୍ରଧାନ ଲକ୍ଷଣ । ଶବ୍ଦାଳଙ୍କାର ତଥା ଅର୍ଥାଲଙ୍କାରର ବହୁଳ ପ୍ରୟୋଗଦ୍ୱାରା କାବ୍ୟକୁ ଶ୍ରୁତିମଧୁର କରିବା ବୋଧହୁଏ ରୀତିଯୁଗୀୟ କବିମାନଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଏହା ଫଳରେ କାବ୍ୟର ଭାବ ଓ ଭାଷା କେବେ କେବେ ମଧ୍ୟରେ ବହୁ ଅବୋଧ ହୋଇ ଉଠିଥିଲେ ମଧ୍ୟ ଅଲଙ୍କାରର ମଧୁର ପଦବିନ୍ୟାସ ଯୋଗୁଁ ଏହା ଗଣସାହିତ୍ୟରେ ପରିଣତ ହୋଇପାରିଥିଲା । ଏହା ସର୍ବଜନବୋଧ୍ୟ ନହେଲେ ମଧ୍ୟ ସର୍ବଜନଗ୍ରାହ୍ୟ । ଏହି ଅଲଙ୍କାରକାବ୍ୟର ଶୋଭାବର୍ଦ୍ଧନକରି ପାଠକର ମନକୁ ନାଗେଶ୍ୱରୀ ଭଳି ଆକୃଷ୍ଟ କରୁଥିଲା । ଆଭରଣ-ଯୁକ୍ତ ତରୁଣୀ ଯେପରି ଆକୃଷ୍ଟ କରେ, ଏହି କାବ୍ୟ-ସୁନ୍ଦରୀ ଠିକ୍ ସେହିପରି ଏକ ଭୂମିକା ଗ୍ରହଣ କରିଥିଲା । ସଂସ୍କୃତ ସାହିତ୍ୟରେ 'ଭାମହ' ହିଁ ପ୍ରଥମେ ଅଲଙ୍କାର ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥିଲେ । ପରଯୁଗରେ ଏହି ଅଲଙ୍କାରର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରାଗଲା । ତେଣୁ ରୀତିଯୁଗରେ ଭଞ୍ଜପ୍ରଭୃତି କବିମାନେ ଏହା ଉପରେ ମଧ୍ୟ ସମ୍ୟକ ଗୁରୁତ୍ୱ ଆରୋପକଲେ । ଏହା ଏପରି ଏକ ସ୍ତରରେ ଆସି ପହଞ୍ଚିଲା-ଯାହାଫଳରେ ଓଡ଼ିଶୀ ରୀତିଯୁଗୀୟ କବିମାନେ ସଂସ୍କୃତ କାବ୍ୟର ଆଦର୍ଶକୁ ବଳିଗଲେ । ଭଞ୍ଜ ଲାବଣ୍ୟ-ବତୀରେ ତେଣୁ ଲେଖିଛନ୍ତି—

"ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିସ୍ତରିଲି
ଏଣୁକରି ଥିବ ଅଲଙ୍କାର ଯୁକ୍ତହୋଇ ।

ଅନ୍ୟାନ୍ୟ କବିମାନଙ୍କୁ ବାଦଦେଇ କେବଳ ଭଞ୍ଜ ଓ ତାଙ୍କ ଶିଷ୍ୟ ଅଭିମନ୍ୟୁଙ୍କ କାବ୍ୟ ଆଲୋଚନା କଲେ ଯେଉଁ ଅଲଙ୍କାରମାନ ନେତ୍ରପଥାରୂଢ଼ହୁଏ, ତାହା ପାଠକର ବିସ୍ମୟ ସଂଗ୍ରହ କରେ ।

ଉପେନ୍ଦ୍ର ଭଞ୍ଜ ଚିତ୍ରକାବ୍ୟ ବନ୍ଧୋଦୟରେ ଲେଖିଛନ୍ତି—
"ଛନ୍ଦବନ୍ଧ ହୋଇ ବେନପ୍ରକାର,
କେତେକ ଛନ୍ଦ କେତେବନ୍ଧ ସାର,
ଶାର୍ଦ୍ଦୂଳ କ୍ରୀଡ଼ିତ ମଣ୍ଡୂକ ପ୍ଲୁତ,
ଲୋମ ବିଲୋମ ତୁରଙ୍ଗମ ଗତି,
ବହିର୍ଲ୍ଲିପିକା ଜାଣ ଜାତି ତାହିଁ,
ଷଟ୍ପ୍ରକାର ଅନ୍ତର୍ଲିପି ସହିଁ,
ପ୍ରଶ୍ନ ଉତ୍ତର ଅଜା ମେଷ ଯୁଦ୍ଧ,
ଯମକ ଗୁପ୍ତ ପଦଚ୍ଛେଦ ସିଦ୍ଧ,
ସିଂହାବଲୋକନ ଶୃଙ୍ଖଳା ଦୁଇ;
ଗୋମୂତ୍ର ପଦ୍ମ ମତ୍ସ୍ୟ ଛନ୍ଦହୋଇ,
ଜଳାନ୍ଦ୍ର ଶକଟ ପଦ୍ମ ଚକ୍ରହିଁ,
ଚିତ୍ରକ ଛନ୍ଦ ଗଣନାରେ କେନ୍ଦ୍ର,

× × × ×

ବିଭିନ୍ନ ପ୍ରକାର ବନ୍ଧରେ ବର୍ଣ୍ଣନା କରିବାକୁ ଯାଇ ପୁଣି ଲେଖିଛନ୍ତି—

"ଅମ୍ବୁଜ ଚକ୍ର ବନ୍ଧ ବହୁବିଧି,
କମ୍ବୁ ଶମ୍ଭୁ ଗଦା ଶୂଳ ପ୍ରସିଦ୍ଧି,
ରଥ ବନ୍ଧ ଅଷ୍ଟ ଡନ ବିଧାନ,
ଚନ୍ଦ୍ର ସୂର୍ଯ୍ୟ ଚତୁଷ୍ଟକ ସ୍ୟନ୍ଦନ,
ପରଶୁ ଖଡ଼ଗ ଦ୍ୱାର କବାଟ,
ସର୍ବତୋ ଭଦ୍ର ସୁକଙ୍କଣ ଅଟ,
କଚ୍ଛପ ପ୍ରାସାଦ ନାଗ ଗବାକ୍ଷ,
ମୁରୁଜ ଲତାବେନ ମତ୍ସ୍ୟ ଅକ୍ଷ,

ବାଣ କୁଳିଶ ବହ୍ନିବ ଶକଟ,
ଗୁଚ୍ଛ ଶର ପଦ୍ମ ଧନୁ କୁକୁଟ,
ଛୁରିକା କୁଟିଳ ଅସି ଜଗତ,
ସର୍ପ ଯୁଗଳହିଁ ଧ୍ୱଣି ଚଳତ,,

× ˎ × ×

ଚ୍ୟୁତ ଦତ୍ତ ଦତ୍ତଚ୍ୟୁତ ଅକ୍ଷର,
ସର୍ବତ୍ର୍ୟ ନିରୌଷ୍ଠ୍ୟ ଶ୍ଳେଷ ବର୍ତ୍ତର
ଏକାକ୍ଷର ଦ୍ୱିଅକ୍ଷର ରଚନ,
ସକଳ ପ୍ରକାରେ ମୋହର ମନ୍"।

ଏଥିରୁ ସହଜରେ ସମସ୍ତେ ଅନୁମାନ କରି ପାରିବେ ଯେ, କେବଳ କବି ସମ୍ରାଟ ତାଙ୍କର କାବ୍ୟମାନଙ୍କରେ କପରିଭାବରେ ଅଳଙ୍କାରର ପ୍ରୟୋଗ କରିଛନ୍ତି, ବିଶେଷକରି ଶବ୍ଦାଳଙ୍କାର ପ୍ରୟୋଗ କରିଛନ୍ତି । ଏତଦ୍‌ବ୍ୟତୀତ ସେ ଲେଖିଛନ୍ତି—"ଆଉ ବନିମାନ ଅଛନ୍ତି ଯେହ୍ନ, ଗ୍ରନ୍ଥବାହୁଲ୍ୟକୁ ମେଲିଲି ନାହିଁ । ଅର୍ଥାତ— ଆହୁରି ଥିଲା । କବି ଗ୍ରନ୍ଥର କଳେବର ବୃଦ୍ଧି ଦୃଷ୍ଟିରୁ ବର୍ଣ୍ଣନା କରିନାହାନ୍ତି ଏଥିପାଇଁ ସେ ହୋଇଛନ୍ତି ସମଗ୍ର ଭାରତୀୟ ରୀତିଯୁଗର ସମ୍ରାଟ । ଏତଦ୍‌ବ୍ୟତୀତ ତାଙ୍କର 'ବ' ନିୟମରେ 'ବୈଦେହୀଶ ବିଳାସ, 'ସ' ନିୟମରେ ସୁଭଦ୍ରା ପରିଣୟ ଆଦ୍ୟ 'କ' ଓ ପ୍ରାନ୍ତ 'କ' ନିୟମରେ 'କଳାକଉତୁକ' ଓ ଅବନା ରସ ତରଙ୍ଗ ଗୋଟିଏ ଗୋଟିଏ ଆଳଙ୍କାରିକ କାବ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟ କବିମାନଙ୍କୁ ଛାଡ଼ି କେବଳ 'ଭଞ୍ଜ ଓ ଅଭିମନ୍ୟୁଙ୍କ ଅଳଙ୍କାର ଉଦାହରଣମାନ ଉଦ୍ଧାରକଲେ ଗୋଟିଏ ପୋଥି ହେବ । 'ଯେନ ନୈଷଧ ପନ୍ଥାଏ, କହି ଭଞ୍ଜ ବୋଧହୁଏ ତାଙ୍କର ଆଦର୍ଶରେ ଏ ଦିଗରେ ଅନୁପ୍ରାଣିତ ହୋଇଛନ୍ତି । ତା'ଛଡ଼ା ଦୀନକୃଷ୍ଣ, ଭକ୍ତଚରଣ, କବିସୂର୍ଯ୍ୟ ଯଦୁମଣିଙ୍କର ଏ ଦିଗରେ ସୃଷ୍ଟିମଧ୍ୟ କମ୍ ନୁହେଁ । ବିଶେଷକରି ଅଭିମନ୍ୟୁ ନିଜଗୁରୁ

ଭଞ୍ଜଙ୍କୁ ମଧ୍ୟ ସମସ୍ତ ସମୟରେ ବଳାଯାଇଛନ୍ତି । ସେଥିପାଇଁ କୁହାଯାଇପାରେ ଯେ, ସେ ଝବଦଗ୍ଧ ଚନ୍ଦ୍ରାମଣିର ଷଟ୍‌ତ୍ରିଂଶ ଛାନ୍ଦରେ ୬ପ୍ରକାର ଅନୁପ୍ରାସ ଓ ୧୪ ପ୍ରକାର ଯମକର ବ୍ୟବହାର କରିଛନ୍ତି । ତେଣୁ କୁହାଯାଇଛି—

"ଉପମା ଭଞ୍ଜ ସ୍ୱାରସ୍ୟ ତସୈବଗୁର୍ଥ ଗୌରବ
କଲ୍ଲୋଳେ ପଦ ଲାଳିତ୍ୟଂ ସନ୍ତି ଚନ୍ଦ୍ରାମଣି ଯଯ୍ୟୋ" ।

ଦୀନକୃଷ୍ଣ ମଧ୍ୟ ତାଙ୍କର ରସକଲ୍ଲୋଳକୁ "କ ଅକ୍ଷରେ ହୋଇଛି ନାୟକ" ବୋଲି କହିଛନ୍ତି । ଏଥିର ଅଧିକ ଉଦାହରଣ ଅନାବଶ୍ୟକ ।

ପୌରାଣିକତା ରୀତିଯୁଗର ଅନ୍ୟତମ ଲକ୍ଷଣ । ରୀତିଯୁଗ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଯେ ଏକ ପୁରାଣ ଯୁଗ ସୃଷ୍ଟି ହୋଇ ଥିଲା, ତାହା କୌଣସି ପାଠକକୁ ଅବିଦିତ ନୁହେଁ । ଭାରତର ଅନ୍ୟାନ୍ୟ ଆଞ୍ଚଳିକ ଭାଷା ସାହିତ୍ୟରେ ମଧ୍ୟ ରୀତିଯୁଗ ପୂର୍ବରୁ ଏକ ପୁରାଣଯୁଗ ସୃଷ୍ଟି ହୋଇଥିଲା । ଓଡ଼ିଆ ସାହିତ୍ୟରେ ଠିକ୍ ସେହିପରି ଭଞ୍ଜଯୁଗ ବା ରୀତିଯୁଗ ପୂର୍ବରୁ ପଞ୍ଚସଖା ଓ ତା ପୂର୍ବରୁ ଶାରଳାଦାସଙ୍କ ଯୁଗ । ଶାରଳାଦାସଙ୍କ ମହାଭାରତ, ଚଣ୍ଡୀପୁରାଣ, ବିଲଙ୍କା ରାମାୟଣ ଓ ପଞ୍ଚସଖାଙ୍କର ଦାଣ୍ଡି ରାମାୟଣ, ଭାଗବତ, ବ୍ରହ୍ମାଣ୍ଡ ଭୂଗୋଳ ପ୍ରଭୃତି ପୁରାଣରଚନା ଓ ଅନୁବାଦ କରାଯାଇଥିଲା । ତେଣୁ ଏହି ପୁରାଣ ସାହିତ୍ୟ ପରେ ଜନ୍ମଲାଭ କରିଥିଲା ରୀତିଯୁଗ ସାହିତ୍ୟ । ଓଡ଼ିଆ ସାହିତ୍ୟର ରୀତିଯୁଗରେ ପୁରାଣର ସୃଷ୍ଟି ନଥିଲେ ମଧ୍ୟ କାବ୍ୟମାନଙ୍କରୁ ପୌରାଣିକତା ବାଦଯାଇ ନଥିଲା । ତେଣୁ କାଳ୍ପନିକ ଓ ପୌରାଣିକ, ଏଭଳି ଉଭୟ କାବ୍ୟର ପ୍ରଚଳନ ଦେଖାଦେଇଥିଲା । ଏପରିକି ପୁରାଣକୁ

ସମ୍ପୂର୍ଣ୍ଣ ବାଦଦେଇ କାଳ୍ପନିକ କାବ୍ୟରେ ପୌରାଣିକ ଗୀତ ତଥା ବେଦ ବେଦାନ୍ତ ଓ ଧର୍ମଶାସ୍ତ୍ର ମାନଙ୍କର ଅବତାରଣା କରାଗଲା । କାବ୍ୟରେ ଲୌକିକ ତଥା ଅଲୌକିକ ଉଭୟର ବର୍ଣ୍ଣନା କରାଗଲା । ତେଣୁ ଅଭିମନ୍ୟୁ ଲେଖିଛନ୍ତି— "ନ୍ୟାୟାଦି ଶାସ୍ତ୍ରପୁରାଣ ବେଦାଗମ୍ୟ କାବ୍ୟନ୍ୟାୟ ଜାଣେ କେ କର ଏ ହୋଇବଟି ଭାବ୍ୟ ।" ରସକଲ୍ଲୋଳ, ବୈଦେହୀଶ ବିଳାସ, କଳାକଉତୁକ, ସୁଭଦ୍ରା ପରିଣୟ, ବିଦଗ୍ଧ ଚିନ୍ତାମଣି ପ୍ରଭୃତି ପୌରାଣିକ କାବ୍ୟକୁ ବାଦଦେଲେ ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଭଳି କାଳ୍ପନିକ କାବ୍ୟରେ ମଧ୍ୟ ପୌରାଣିକତାର ଅବତାରଣା କରାଯାଇଛି । ଲାବଣ୍ୟବତୀରେ ପାର୍ବତୀଙ୍କର ପଶାଖେଳ, ବାଞ୍ଛା-ନିଧିର ଜନ୍ମ, ଗହନ ଅରଣ୍ୟରେ ପ୍ରାହ୍ଲାଦଙ୍କର ସହ ମିଳନ ଓ ମୃତ୍ୟୁ, ଦୈବବାଣୀ ପୁଣି ପୁନର୍ଜନ୍ମ ଏହା ପୌରାଣିକତା ବ୍ୟତୀତ କ'ଣ ହୋଇପାରେ ? ଏହିପରି ମଧ୍ୟ ଅନ୍ୟ କାଳ୍ପନିକ କାବ୍ୟମାନଙ୍କର ଅବସ୍ଥା ।

ସାହିତ୍ୟରେ ଧର୍ମପ୍ରଚାରର ହ୍ରାସ ରୀତିଯୁଗର ଅନ୍ୟତମ ଲକ୍ଷଣ । ଶାରଳାଦାସ ତଥା ପଞ୍ଚସଖା ଯୁଗରେ ଧର୍ମର ପ୍ରଚାର ଯେପରି ମାଧ୍ୟମରେ କରାଯାଇଛି ରୀତିଯୁଗରେ ଏଥିରେ ପ୍ରାୟ ଭଟ୍ଟା ପଡ଼ି ଯାଇଥିଲା । ଶାରଳାଦାସ, ଚଣ୍ଡୀ ବା ଶାରଳାଙ୍କର ଉପା-ସନାରେ ଶାକ୍ତଧର୍ମର ପରାକାଷ୍ଠା ପ୍ରଦର୍ଶନକରି ସାହିତ୍ୟ ମାଧ୍ୟମରେ ତାହା ପ୍ରକାଶକଲେ । ସେ ପ୍ରଥମେ ଭକ୍ତ ଓ ପରେ କବି । ନିଜର ଭକ୍ତିଭାବ ପ୍ରଦର୍ଶନ କରିବାକୁଯାଇ ସେ ସୃଷ୍ଟିକଲେ ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣ । ସେହିପରି ପଞ୍ଚସଖା ଯୁଗରେ ଧର୍ମ ସାହିତ୍ୟ ମାଧ୍ୟମରେ ପ୍ରଚାର କରାଯାଇଛି । ବୈଷ୍ଣବ ବୌଦ୍ଧ ପ୍ରଭୃତି ବିଭିନ୍ନ ଧର୍ମର ସମନ୍ୱୟ ହୋଇଛି ଏହିଯୁଗ ସାହିତ୍ୟରେ ।

ଏପରି କୁହାଯାଇପାରେ ଯେ, ପଞ୍ଚସଖା ଯୁଗରେ ଏପରି କୌଣସି ପୁସ୍ତକ ବା ଗ୍ରନ୍ଥନାହିଁ ଯେଉଁଥିରେ କି ଧର୍ମର ପ୍ରଭାବ ନପଡ଼ିଛି । ତା ବ୍ୟତୀତ ବଳରାମ, ଜଗନ୍ନାଥ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ, ଏମାନେ ସବୁ ବୈଷ୍ଣବ ସମ୍ପ୍ରଦାୟର । ତେଣୁ ସେମାନଙ୍କ ସାହିତ୍ୟରେ ଏଭଳି ଧର୍ମପ୍ରଚାର କରାଯିବା ସ୍ୱାଭାବିକ । କିନ୍ତୁ ରୀତିଯୁଗରେ ସାହିତ୍ୟ ମାଧ୍ୟମରେ ଧର୍ମ ପ୍ରଚାର ବହୁଳ ଭାବରେ ହ୍ରାସ ପାଇଲା । ଏପରିକି ରୀତିଯୁଗ ସମ୍ରାଟ ଭଞ୍ଜ କୌଣସି ଏକ ସମ୍ପ୍ରଦାୟରେ ନଥିଲେ । ସେ ରାମଭକ୍ତ ଥିଲେ ମଧ୍ୟ, "ତାରକମନ୍ତ୍ର ପରସାଦେ ଜିବ ପଣଟି ମୋର ଉଦେ" ବୋଲି କହିଥିଲେ ମଧ୍ୟ ସେ କୌଣସି ଗୋଟିଏ ଧର୍ମ ବା ଦେବତାଙ୍କର ମହିମା ଗାନ କରିନାହାନ୍ତି, କିମ୍ବା ତାଙ୍କ ସାହିତ୍ୟକୁ ଧର୍ମର ଏକ କ୍ରୀଡ଼ାଭୂମି ରୂପେ ପ୍ରକାଶ କରିନାହାନ୍ତି । ସେ ଅଯୋଧ୍ୟାର ରାମ, ମଥୁରା ବୃନ୍ଦାବନ ଗୋପର କୃଷ୍ଣ, ନୀଳାଚଳର ଜଗନ୍ନାଥ, ବଳରାମ ପର୍ଶୁରାମ, ବିଭିନ୍ନ ତୀର୍ଥ ଓ ଅନ୍ୟାନ୍ୟ ବିଭିନ୍ନ ଦେବତାଙ୍କର ପ୍ରଶସ୍ତି ଗାନ କରିଛନ୍ତି । ଦୀନକୃଷ୍ଣଙ୍କ କୃତିପ୍ରତି ଲକ୍ଷ୍ୟକଲେ ତାଙ୍କର କାବ୍ୟକବିତାରୁ କୌଣସି ଉଗ୍ରଭାବ ପ୍ରକାଶିତ ହୁଏନା । ସେ ବରଂ ଓଡ଼ିଶୀ ଓ ଗୌଡ଼ୀୟ ବୈଷ୍ଣବ ମାନଙ୍କର ତୀବ୍ର ମନୋଭାବକୁ ହ୍ରାସକରି ସମନ୍ୱୟ ଆନୟନ କରିବାକୁ ଚେଷ୍ଟାକରିଛନ୍ତି ଏବଂ ତାଙ୍କ ଦୃଷ୍ଟିରେ ଜଗନ୍ନାଥ ଓ କୃଷ୍ଣ, ଅଭିନ୍ନ, ଅବଶ୍ୟ ଅଭିମନ୍ୟୁ ଭକ୍ତଚରଣ ଓ ଗୋପାଳକୃଷ୍ଣ ପ୍ରଭୃତି କେତେକ କବିଙ୍କର କାବ୍ୟରେ ଗୌଡ଼ୀୟ ବୈଷ୍ଣବ ଭାବ ପ୍ରକାଶିତ ହୁଏ । ତାହା କିନ୍ତୁ ପଞ୍ଚସଖା ଯୁଗଭଳି ଏତେ ଉତ୍କଟ ରୂପର ବହିଃପ୍ରକାଶ ନୁହେଁ ।

ଓଡ଼ିଶୀ ରୀତିଯୁଗ କାବ୍ୟରେ ଶୃଙ୍ଗାରିକତା ଏକ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲା । "ଶୃଙ୍ଗାର ଚେତ୍ତ କଚଃ"ର ଆଦର୍ଶରେ କାବ୍ୟ

ଲିଖନରୀତି ଏମାନଙ୍କୁ ବହୁଭାବରେ ଅନୁପ୍ରାଣିତ କରିଥିଲା । ପୂର୍ବରୁ ସୂଚାଇ ଦିଆଯାଇଛି ଯେ, ଉତ୍କଳର ସ୍ୱାଧୀନତା ଅପହରଣ ପରେ ସାମନ୍ତରାଜାମାନେ କରଦରାଜା ରୂପେ କୌଣସି ଦାୟିତ୍ୱରେ ନଥାଇ ବିଳାସ ବ୍ୟସନରେ ଜୀବନଯାପନ କରିବାକୁ ଲାଗିଲେ । ଦରବାରୀ କବିମାନଙ୍କୁ ଶୃଙ୍ଗାର ରସପୂର୍ଣ୍ଣ କାବ୍ୟକବିତା ଲେଖିବାପାଇଁ ନିର୍ଦ୍ଦେଶଦେଲେ । ଫଳରେ ବୈଷ୍ଣବଧର୍ମ ରାଧା କୃଷ୍ଣ ଲୀଳାର ଶୃଙ୍ଗାରରସ ସହିତ "ଶୃଙ୍ଗାରୀ ଚେତ୍ତ କବିଃ" ମାନଙ୍କର ମିଳନରେ କାବ୍ୟପଥ ହୋଇଉଠିଲା । ଶୃଙ୍ଗାରମୟ "ଶୃଙ୍ଗାର ଏବଂ ମଧୁର" ଦୃଷ୍ଟିରୁ ବିଗ୍ଭରକରି ଭକ୍ତିପ୍ରଭୃତି କବିମାନେ ଶୃଙ୍ଗାରୀ କବିରେ ପରିଣତହେଲେ । ତେଣୁ କବିମାନେ କବିତାରୂପୀ ବନିତାକୁ ରସିକନେତା ଭୋଗକଲେ ତାହାର କିଛି ଯୋଗ୍ୟତା ରହେ ବୋଲି ବିଗ୍ଭରକରି ଓ ମଳୟ-ପବନମତ କବିତା ରସିକଚିତ୍ତକୁ ପଲ୍ଲବିତ କରେ ବୋଲି ଧାରଣାନେଇ କବିତ୍ୱରୂପୀ ଉତ୍ତମ ଗୋଷ୍ଠୀର ସୃଷ୍ଟିକଲେ । ଯାହାଫଳରେ ଏହି କବିତ୍ୱରୂପୀ ଉତ୍ତମ ଗୋଷ୍ଠୀରକୁ ପାନକରି ଓଡ଼ିଆ ପାଠକ ନିଜକୁ ସ୍ୱାସ୍ଥ୍ୟବାନ ମନେକଲା ।

ଉଭୟ ମିଳନ ବିଚ୍ଛେଦରେ ଶୃଙ୍ଗାରରସର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ଏପରିକି ରତିକ୍ରୀଡ଼ା ବର୍ଣ୍ଣନାରେ କାବ୍ୟ ସ୍ଫୀତହେବାକୁ ଲାଗିଲା । କିନ୍ତୁ ଏପରି ପରିସ୍ଥିତି ସୃଷ୍ଟିହେଲା ଯେ— ଏହି "ଏବ ମଧୁର ଶୃଙ୍ଗାର" ସ୍ଥାନେ ସ୍ଥାନେ ବୀଭତ୍ସ ରସରେ ପରିଣତ ହେଲା । ଯାହା ଆଦିରସ ନାମରେ ପରିଚିତ, ତାହା ବିଭତ୍ସ ରସରେ ପରିଣତହୋଇ ବିକାରଗ୍ରସ୍ତ ମନର ପରିଚୟଦେଲା । କିନ୍ତୁ ଉପଭୋଗ ପ୍ରଧାନ ବିଳାସରେହିଁ ପ୍ରେମର ଯେଉଁ ଏକନିଷ୍ଠତା,

ତାହା ଏହି କାବ୍ୟମାନଙ୍କରେ ଲକ୍ଷ୍ୟକରିବାର କଥା । ତାଙ୍କୁ କେନ୍ଦ୍ରକରି ଏଯୁଗରେ କାବ୍ୟକବିତା ସୃଷ୍ଟିହେଲେ ମଧ୍ୟ ଏହା-ପଛରେ ଏକମହାନ୍ ଆଦର୍ଶ କାର୍ଯ୍ୟକରିବାକୁ ଲାଗିଲା । ବିଶେଷକରି ଭଞ୍ଜଙ୍କର ମୁଖ୍ୟ କାଳ୍ପନିକ କାବ୍ୟମାନଙ୍କରେ ତଥା ପୌରାଣିକ କାବ୍ୟମାନଙ୍କରେ ବୈଧୀପ୍ରେମର ଯେଉଁ ଚିତ୍ରଣ କରାଗଲା, ତାହା ସନାତନ ହିନ୍ଦୁଧର୍ମର ପରଂପରା ରକ୍ଷାକଲା ଓ ତତ୍କାଳୀନ ବୈଷ୍ଣବ ଧର୍ମରୁ ସୃଷ୍ଟି ହୋଇଥିବା ପରକୀୟା ପ୍ରେମରେ ଜାତିକୁ ବିପଥଗାମୀ ନହେବାକୁ ସଙ୍କେତ ଦିଆଗଲା । ଜାତିପ୍ରତି ଭଞ୍ଜଙ୍କର ଏହା କିଛି କମ୍ ଦାନ ନୁହେଁ । ନାୟକ ରାଜପୁତ୍ର ଶରତର ନିର୍ମଳଚନ୍ଦ୍ର ମଣ୍ଡଳକୁ ଲକ୍ଷ୍ୟକରି ପ୍ରେମିକା ନିକଟକୁ ବିନୟ ପତ୍ର ଲେଖିଥିଲେ ମଧ୍ୟ ବିରହରେ ବ୍ୟଥିତହୋଇ ଚନ୍ଦ୍ର, ଚନ୍ଦନ, ବିଣାରେର, ପଦ୍ମଦଳକୁ ସର୍ବାଙ୍ଗରେ ଲେପୁଥିଲେ ମଧ୍ୟ, ନାୟିକା ପଦେ ଠେଲିଦେଲେ ଅଲକ୍ତାପରାଏ ତା ପଦରେ ଲାଗିରହିଥିବି ବୋଲି ଆଶାପ୍ରକାଶ କରୁଥିଲେ ମଧ୍ୟ, ଏହା ଅନ୍ୟ କାହାରିପାଇଁ ନୁହେଁ । କେବଳ ନିଜର ସହଧର୍ମିଣୀ ପାଇଁ, ଯେ କି ନାୟକର ବା ପୁରୁଷର ଅର୍ଦ୍ଧାଙ୍ଗିନୀ । ସେଥିପାଇଁ ଦେବ ଦେବ ମହାଦେବ ଅର୍ଦ୍ଧନାରୀଶ୍ବର । ଏହି ଦୃଷ୍ଟିରୁ ବିଚାରକରି ସମଗ୍ର ଭଞ୍ଜସାହିତ୍ୟକୁ ଆଲୋଚନାକଲେ ଏହା ସାର୍ଥକ ଶୃଙ୍ଗାର ରୂପେ ପ୍ରତୀୟମାନ ହେବ ଏହାମଧ୍ୟ 'ଏବ ମଧୁର ହୋଇଉଠିବ' ଭଞ୍ଜଧର୍ମନାମରେ ବ୍ୟଭିଚାର ସୃଷ୍ଟିକରିବାକୁ ଇଚ୍ଛାକରି ନାହାନ୍ତି । ଏଥିପାଇଁ ପୂଜ୍ୟ ୰ନୀଳକଣ୍ଠ ଦାସ ପରକୀୟା ପ୍ରେମପନ୍ଥୀ ବୈଷ୍ଣବ ମାନଙ୍କୁ ଲକ୍ଷ୍ୟକରି ଲେଖିଛନ୍ତି— ଯୌନଚର୍ଯ୍ୟର ବିଳାସ ଯେବେ ଚାହଁ ତେବେ ଧର୍ମ-ନାମରେ, କୃଷ୍ଣଙ୍କ ନାମରେ ଏକଥା କାହିଁକି ? ପୂର୍ଣ୍ଣ ସଂଯମରେ ରହି ସେ ସୁବିଧା କରାଯାଇ ପାରେ ।

ସାଙ୍ଗୀତିକତା ହେଉଛି ରୀତିଯୁଗ କାବ୍ୟର ଅନ୍ୟ ଏକ ମହାନ ବିଶେଷତ୍ୱ । କେବଳ ସାଙ୍ଗୀତିକତା ଓ ଆଳଙ୍କାରିକତା ଯୋଗୁଁ ଭଞ୍ଜ ତଥା ଅନ୍ୟାନ୍ୟ କବିମାନେ ଏପର୍ଯ୍ୟନ୍ତ ବଞ୍ଚି ରହିଛନ୍ତି । ଏହି ଦୃଷ୍ଟିରୁ ଏମାନଙ୍କୁ ଗଣକବି କହିଲେ ସତ୍ୟର ଅପଳାପ ଆଦୌ କରାଯିବନି । ରୀତିଯୁଗ ପୂର୍ବରୁ ଯେଉଁ କାବ୍ୟ ସୃଷ୍ଟି ହୋଇଥିଲା ତାହା ଏତେ ପରିମାଣରେ ସଙ୍ଗୀତାଶ୍ରୟୀ ନଥିଲା । କିନ୍ତୁ ରୀତିଯୁଗରେ ନିର୍ଦ୍ଦିଷ୍ଟ ଭାଷା ବନ୍ଧନୀ ମଧ୍ୟରେ ଛନ୍ଦୋବଦ୍ଧ କାବ୍ୟ ସୃଷ୍ଟି କରାଯାଇ କାବ୍ୟ ରାଜ୍ୟକୁ ସଙ୍ଗୀତମୟ କରାଯାଇଥିଲା । ଫଳରେ ବିଭିନ୍ନ ପ୍ରକାର ରାଗ ରାଗିଣୀ ତଥା ଛନ୍ଦରେ ସାହିତ୍ୟର ସୃଷ୍ଟି ହେଲା । ତେଣୁ ଏହାର ସ୍ୱର ଲାଳିତ୍ୟର ନାଗେଶ୍ୱରୀ ଜଡ଼ି ଜନତାକୁ ମଧ୍ୟ ଆକୃଷ୍ଟ କଲା । ଭାବାନୁସାରୀ ତଥା ରସାନୁସାରୀ ଶବ୍ଦ ପ୍ରୟୋଗ ଫଳରେ ସ୍ୱର ସଂଯୋଗକରି ଗାନକଲେ ତାହା ଅକ୍ଷିନ୍ଦ୍ରିୟ ଜଗତକୁ ଟେକିନେଉଥିଲେ । ଜନଗଣର ଭାଷା ଏଥିରେ ବିଶେଷ ପ୍ରୟୋଗ କରାଯାଇ ନଥିଲେ ମଧ୍ୟ ସ୍ୱର ମନ୍ତ୍ରଭଳି ଏପର୍ଯ୍ୟନ୍ତ କାର୍ଯ୍ୟକରି ଆସୁଛି । ସେ ଯୁଗର କବିମାନେ ଏହି ରାଗର ବିଶେଷ ପ୍ରୟୋଗ କରୁଥିଲେ । ତେଣୁ ବହୁ ରାଗରାଗିଣୀର ପ୍ରୟୋଗ କରାଗଲା । ଯଥା—ମଙ୍ଗଳ କେଦାର, କାମୋଦୀ, କୁମ୍ଭ କାମୋଦୀ, ଆହାରୀ, ଘଣ୍ଟାରବ, ଶଙ୍କରାଭରଣ, କୌଶିକ, ଚୋଖୀ, ଭୂପାଳ, ରାମକେରୀ ପ୍ରଭୃତି । ଏପରି ଯେ କେତେ ରାଗର ପ୍ରୟୋଗ କରା-, ଯାଇଛି ତାହା ସାହାଜନର ଧାରଣା ଜରି ହୁଏନା । ଭଞ୍ଜ ପ୍ରଭୃତି କବିମାନଙ୍କର ମଧ୍ୟ ସଙ୍ଗୀତଶାସ୍ତ୍ରରେ ବିଶେଷ ପ୍ରବେଶ ଥିଲା । ଉଦାହରଣରେ କୁହାଯାଇପାରେ—

"ହେ କି କଇଳାସ ତାଳରେ ପ୍ରକାଶ ଆଦି ଯତି ମନମୋହୁଥିଯେ,
ଶୋଭିନୀ ସାରୀ ସିଦ୍ଧ ମଠାଲିଙ୍ଗନ ଜ୍ଞାନ ଝମ୍ପା ରୂପ କାହିଁଯେ
ତ୍ରିପୁଟା, ଏକତାଳ ଯୁକ୍ତ କାହିଁଯେ ।

ଧାରମାନ ଅନ୍ତର୍ଭେଦୀ ବଚନରେ ଗଭୀର ପ୍ରକଟ ଯହିଁରେ"
ଏହିଭଳି ବିଭିନ୍ନ କବିଙ୍କର ସଙ୍ଗୀତଲ୍ଲାନ ବିଷୟରେ ବହୁ ଉଦାହରଣ ଦିଆ ଯାଇପାରେ ।

ପ୍ରକୃତ ଶବ୍ଦରେ ନୂତନ ଦୃଷ୍ଟିକୋଣର ସଚନା ଗୀତଯୁଗ ସାହିତ୍ୟରୁ ମିଳିଥାଏ । ସୃଷ୍ଟିର ପ୍ରାକ୍‌କାଳରୁ ମାନବ କନ୍ୟାକୁମାରୀରୁ କାଶ୍ମୀର ପର୍ଯ୍ୟନ୍ତ ଯେତେବେଳେ ବିଚରଣ କରିଥିବ, ସେତେବେଳେ ହୁଏତ ସେ ମନୁରୁ ମନୁଷ୍ୟ ଜନ୍ମ ଆଦାମ୍‌ରୁ ଆଦମ୍ ହୋଇ ବିଚରଣ କରୁଛି ବୋଲି ଭାବି ନଥିବ । ତାରକା ଖଚିତ ନୀଳନଭ ତଳେ, ବସନ୍ତର ମୃଦୁମନ୍ଦ ହିଲ୍ଲୋଳରେ ଗିରିବନ ବିଷବେଳା କଲ୍ଲୋଳରେ, ମାନବ ଜୀବନକୁ ଉପଭୋଗ କରିନପାରି ଖାଲି ବିସ୍ମୟ ବିସ୍ଫାରିତ ନେତ୍ରରେ ଚାହିଁ ରହିଥିବ କିଏ କଣ କାହିଁକିର ପ୍ରଶ୍ନବାଚୀ ଭଙ୍ଗିନେଇ । ଏହି ନିଗୂଢ଼ ଯୋଗ କ'ଣ ତା'ର ରହସ୍ୟ ଭେଦ କରିବାପାଇଁ ଯୋଗୀଠାରୁ ଭୋଗୀ ପର୍ଯ୍ୟନ୍ତ ଚେଷ୍ଟାକରି ଆସୁଛନ୍ତି ଏବଂ ଚାଲିଥିବ ମଧ୍ୟ ।

ତେଣୁ ଗୀତଯୁଗରେ କବିମାନେ ଏହି ବହୁରୂପୀ ପ୍ରକୃତିକୁ ବାଦ୍ ଦିଅନ୍ତି କିପରି ? ଗୀତଯୁଗର କବିମାନେ ପ୍ରକୃତିର ବାହ୍ୟ ରୂପରେ କେବଳ ମୁଗ୍ଧ ହୋଇନାହାନ୍ତି । ଏଥିପାଇଁ ଏହି ପ୍ରକୃତି ବର୍ଣ୍ଣନାରେ ରାଶି ରାଶି ମସୀ ଶେଷ ହୋଇଛି । ପ୍ରକୃତି ଏମାନଙ୍କ ନିକଟରେ ଆତ୍ମକେନ୍ଦ୍ରିକ ନହୋଇ ବସ୍ତୁକେନ୍ଦ୍ରିକ ହୋଇ ଉଠିଛି । ପ୍ରକୃତିର ବିଭିନ୍ନ ଉପାଦାନକୁ ଆଣି ନାୟକ ନାୟିକାଙ୍କର ବିଭିନ୍ନ ଅଙ୍ଗ ସଙ୍ଗେ ତୁଳନା କରିବାକୁ ସେମାନେ ପଶ୍ଚାଦପଦ ହୋଇନାହାନ୍ତି । ତେଣୁ ପ୍ରକୃତିକୁ ପୃଷ୍ଠ ପଟରେ ରଖି ସେମାନେ

ନାୟକ ନାୟିକାର ମାନସିକ ଚିତ୍ରଣ କରି ଯାଇଛନ୍ତି । ପ୍ରକୃତିର ଯେ ଏକ ଆତ୍ମା ଅଛି ଓ ତାହା ମାନବକୁ ପ୍ରତି କ୍ଷଣରେ ଇଙ୍ଗିତ ଦେଉଅଛି, ତାହା ପ୍ରତି ଏମାନେ ବିଶେଷ ଦୃଷ୍ଟି ପାତ କରିଥିଲା ମନେ ହୁଏନା । ଅବଶ୍ୟ ଭଞ୍ଜ ପ୍ରଭୃତି କବିମାନେ ସ୍ଥାନେ ସ୍ଥାନେ ପ୍ରକୃତି ଉପରେ ବ୍ୟକ୍ତିତ୍ୱ ଆରୋପ କରି ନୂତନ ଦୃଷ୍ଟିକୋଣ ସୃଷ୍ଟି କରିଛନ୍ତି ।

"ହେମେ ନଶୀନାଶ ଗଲ୍ ଦଶୀ ଦିଶ କି ପ୍ରାଚୀ ନାଗରୀବର
ନୀଳ ଶାଢ଼ି ଛାଡ଼ି ଅରୁଣ ସରାଗେ ପିନ୍ଧିଲ ଲୋହିତାମ୍ବର
କି ଝଳ, କଞ୍ଜୁ ଉଡ଼ିଯିବା ଇଚ୍ଛୁଅଳି ।
ସେହି ପଦ୍ମିନୀ ସୁରସ ଶାଳୀ, କାନ୍ତ ଉପରକୁ ଡୋଳା ଡାଳି"

କିନ୍ତୁ ଏହା ବହୁଳ ପରିମାଣରେ କରାଯାଇନି । କିମ୍ବା ରାଧାନାଥ ପ୍ରକୃତି ବର୍ଣ୍ଣନାରେ ଯେପରି ସ୍ୱତନ୍ତ୍ର କାବ୍ୟ ସୃଷ୍ଟି କରିଛନ୍ତି କିମ୍ବା ପ୍ରକୃତି ଯେପରି ଦେଶାତ୍ମବୋଧକ ହୋଇପାରିଛି, ରୀତିଯୁଗ ସାହିତ୍ୟରେ ତାହା ବିଶେଷ ହୋଇ ପାରିନି । ଅବଶ୍ୟ ଭଞ୍ଜଙ୍କର ସୁଭଦ୍ରାପରିଣୟରେ ରୈବତ ପର୍ବତ ବର୍ଣ୍ଣନା ବା ଦଣ୍ଡକାରଣ୍ୟର ବର୍ଣ୍ଣନାରେ ପ୍ରକୃତିକୁ ସ୍ୱତନ୍ତ୍ର ଭାବରେ ବର୍ଣ୍ଣନା କରାଯାଇଛି । ରୈବତ ପର୍ବତର "ଶତ ଅବମ ବନତାର ସ୍ତନ ଶୋଭା ପାଉଛି' ଓ ଦଣ୍ଡକାର ବୃହତ ଭାନୁ ଭାନୁ ପ୍ରଭତାପ ନାହିଁ" ପ୍ରଭୃତି ବର୍ଣ୍ଣନାରେ ଏହା ସୂଚିତ ହୋଇଥାଏ । ଏଗୁଡ଼ିକ ଆଳଙ୍କାରିକ ଭାଷା ମଧ୍ୟରେ ପ୍ରକାଶିତ ହୋଇ ଥିବାରୁ ସ୍ୱାଭାବ ସୁନ୍ଦର ହୋଇପାରି ନାହାନ୍ତି । ଏତଦ୍ ବ୍ୟତୀତ ଲାବଣ୍ୟବତୀ'ର ଷଷ୍ଠ ଛାନ୍ଦରେ ଭଞ୍ଜ ଯେଉଁ ସରସୀର ସ୍ୱଭାବ ସୁନ୍ଦର ବର୍ଣ୍ଣନା

ଦେଇଛନ୍ତି ତାହା ସବୁ ଯୁଗକୁ ଆଦର୍ଶ ହୋଇ ରହିବ । ପାଶ୍ଚାତ୍ୟ ସାହିତ୍ୟ ତଥା ଇଂରେଜ ସାହିତ୍ୟର ପ୍ରକୃତି ଚିତ୍ରଣ ରୀତି ମଧ୍ୟଯୁଗୀୟ କାବ୍ୟ ମାନଙ୍କରେ ପରିଲକ୍ଷିତ ହୁଏନା ବୋଲି ଅନେକ ଆକ୍ଷେପ କରନ୍ତି । କିନ୍ତୁ ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ପ୍ରକୃତି ବୈଚିତ୍ର୍ୟମୟୀ । ତାର ଏକ ଆତ୍ମା ଅଛି, ଏହି ଭାବ ଏହି ଷଷ୍ଠ ଛନ୍ଦରେ ଭଞ୍ଜ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି ।

"ଗମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କରି
ନର୍ତ୍ତକୀ ଠାବରୁ ଉଡ଼ୁଁସି ଶିକ୍ଷା ପରି ଏହାରି" ।

ପାଶ୍ଚାତ୍ୟ ଦୃଷ୍ଟି କୋଣରୁ ପ୍ରକୃତି ମଧ୍ୟ ମାନବ ସମାଜକୁ ଇଙ୍ଗିତ ଦିଏ କିନ୍ତୁ ପ୍ରାଚ୍ୟରେ ତା'ର ବିପରୀତ ଘଟେ । ଏଠାରେ ପ୍ରକୃତି ମଧ୍ୟ ମାନବ ନିକଟରୁ ଶିକ୍ଷାକରେ । ଏଠାରେ ସରସୀ ତା'ର ଗମ୍ଭୀରତା ଶିକ୍ଷା କରିଛି ଆମ ପଣ୍ଡିତ ମାନଙ୍କ ଠାରୁ । ଉଡ଼ୁଁସି ତା'ର ନୃତ୍ୟ ଶିକ୍ଷା କରିଛି ଆମ ନର୍ତ୍ତକୀଙ୍କ ଠାରୁ । ତେଣୁ ରୀତିଯୁଗୀୟ କବିମାନେ ପ୍ରକୃତିର ଆଧିକ୍ୟ କୌଣସି ଠାରେ ସ୍ୱୀକାର କରି ନାହାଁନ୍ତି । ରୀତିଯୁଗର ସବୁ କାବ୍ୟରେ ପ୍ରକୃତିକୁ କବି ତାର ଇଙ୍ଗିତରେ ପରିଚାଳିତ କରିଛି ଓ ମାନବର ଆଧିପତ୍ୟକୁ ସବୁବେଳେ ସ୍ୱୀକାର କରିବାକୁ ପ୍ରକୃତିକୁ ବାଧ୍ୟ କରା ଯାଇଛି । (ପାଶ୍ଚାତ୍ୟ ଓ ପ୍ରାଚ୍ୟର ଦୃଷ୍ଟିକୋଣ ସ୍ୱତନ୍ତ୍ର । ତେଣୁ ଆମର ନିଜସ୍ୱ ଆମେ ହରାଇବା କାହିଁକି ? ଏପରି ପ୍ରକୃତି ଚିତ୍ରଣ ଆମ ନିକଟରେ ଆଦର୍ଶ ସ୍ଥାନୀୟ ହେବା ଉଚିତ ଏବଂ ଏହି ଦୃଷ୍ଟିରୁ ପ୍ରକୃତି ଚିତ୍ରଣରେ ଅନୁସନ୍ଧାନ ଚଳିବା ଉଚିତ ।)

ଷେଷରେ କୁହାଯାଇପାରେ ଯେ, ରୀତିଯୁଗର କାବ୍ୟ ଗୁଡ଼ିକ ଗୋଟିଏ ଧରାବନ୍ଧା ରୀତିରେ ପ୍ରଣୟନ କରାଯାଇଛି । ଅର୍ଥାତ କହିବାକୁ ଗଲେ ରୀତିଯୁଗ କାବ୍ୟର ପ୍ରାରମ୍ଭ ମଙ୍ଗଳାଚରଣରେ । ତାପରେ ନାୟକ ନାୟିକାଙ୍କ ଜନ୍ମ ବୃତ୍ତାନ୍ତ ( କୌଣସି କୌଣସି ସ୍ଥାନରେ ସମ୍ଭବହେଲେ ପୂର୍ବଜନ୍ମ ବୃତ୍ତାନ୍ତ ) ତା'ପରେ ଉଭୟଙ୍କର ବାଲ୍ୟ, କୈଶୋର, ଯୌବନ ବର୍ଣ୍ଣନା, ଉଭୟଙ୍କ ଚିତ୍ର ପଟ ପ୍ରେରଣ, ବିବାହ ପ୍ରସ୍ତାବ, ବିବାହ ପୂର୍ବରୁ ପୂର୍ବାନୁରାଗରେ ଚିନ୍ତନ, ସମୟ ସମୟରେ ସ୍ୱପ୍ନର ମିଳନ, ପରେ ବିବାହ । ତା'ପରେ କୌଣସି କାରଣରୁ ନାୟକର ବିଦେଶ ଗମନ, ତେଣୁ ବିଚ୍ଛେଦ । ବିଭିନ୍ନ ଋତୁର ଅବତାରଣାରେ ଅନୁଚିନ୍ତନ । ପତ୍ର ଲିଖନ ଓ ଶେଷରେ ମିଳନ । ଏହା ହେଲା ମୁଖ୍ୟତଃ ରୀତିଯୁଗ କାବ୍ୟର କଥା ବସ୍ତୁ ଗ୍ରନ୍ଥନର କୌଶଳ । ଏତଦ୍ବ୍ୟତୀତ କୌଣସି କୌଣସି କାବ୍ୟରେ ଏହାର ସାମାନ୍ୟ ବ୍ୟତିକ୍ରମ ହୁଏତ ଥାଇପାରେ ।

କହିବା ବାହୁଲ୍ୟ ଯେ, ପ୍ରାୟ ୨୫୦ ବର୍ଷ କାଳ ଓଡ଼ିଆ ସାହିତ୍ୟରେ ରୀତିଯୁଗ ଅସ୍ଥାନ ଜମାଇ ପାରିଥିଲା । ରାମଚନ୍ଦ୍ର ଛୋଟରାୟଙ୍କଠାରୁ ଆରମ୍ଭ କରି ଯଦୁମଣି ମହାପାତ୍ରଙ୍କ ପର୍ଯ୍ୟନ୍ତ ଏହାର କାର୍ଯ୍ୟକାଳ । ଏ ଯୁଗର ପ୍ରଧାନ ପ୍ରଧାନ କବିମାନଙ୍କ ମଧ୍ୟରେ ଅର୍ଜୁନ ଦାସ, ଶିଶୁ ଶଙ୍କର, ଦେବ ଦୁର୍ଲ୍ଲଭ, କାର୍ତ୍ତିକ ଦାସ, ରଘୁନାଥ ହରିଚନ୍ଦନ, ଧନଞ୍ଜୟ ଭଞ୍ଜ, ଦୀନକୃଷ୍ଣ, ଉପେନ୍ଦ୍ର, କବିସୂର୍ଯ୍ୟ ବଳଦେବ ବ୍ରହ୍ମା, ଅଭିମନ୍ୟୁ, କବିସୂର୍ଯ୍ୟ, ଭକ୍ତ ଚରଣ, ଗୋପାଳକୃଷ୍ଣ, ବନମାଳୀ ଓ ଯଦୁମଣି ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

# ଅଭିମନ୍ୟୁ ସାମନ୍ତ ସିଂହାର

ଓଡ଼ିଆ ସାହିତ୍ୟର ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାର ୧୧୬୪ ସାଲ ଖ୍ରୀ: ୧୭୫୭ରେ ଯାଜପୁର ନିକଟସ୍ଥ ଗୋଲକୁଣ୍ଡା ଗ୍ରାମରେ ଜନ୍ମଲାଭ କରିଥିଲେ । ତାଙ୍କର ଜମିଦାରୀର ନାମ ବାଲିଆ । ତାଙ୍କର ପୂର୍ବ ପୁରୁଷ ଜୟପୁର ଅନ୍ତର୍ଗତ ଭାବନଗରରୁ ଓଡ଼ିଶାକୁ ଆସିଥିଲେ । ତାଙ୍କର ପୂର୍ବବର୍ତ୍ତୀ ପୁରୁଷମାନଙ୍କ ନାମରୁ ସେମାନେ ପଶ୍ଚିମ ଭାରତରୁ ଆସିଥିଲେ ବୋଲି ଜଣାଯାଏ । ତାଙ୍କର ପୂର୍ବପୁରୁଷ ଉତ୍କଳକୁ ଆସି ଖୋର୍ଦ୍ଧାର ଭୋଇ ବଂଶୀୟ ରାଜାଙ୍କଠାରୁ ବାଲିଆ ଜମିଦାରୀ ନିଜର ପୌରୁଷ ବଳରେ ଲାଭ କରିଥିଲେ । ଅଭିମନ୍ୟୁଙ୍କର ପିତାଙ୍କ ନାମ ଇନ୍ଦ୍ରଜିତ ସାମନ୍ତ ସିଂହାର ଓ ମାତାଙ୍କ ନାମ ତୁଳସୀ ଦେବୀ । କବି ତାଙ୍କର ଅପ୍ରକାଶିତ 'ରସବତୀ' କାବ୍ୟରେ ନିଜର ଜନ୍ମ ସ୍ଥାନ ଓ ପିତାଙ୍କ ନାମ ପ୍ରକାଶ କରି ଯାଇଛନ୍ତି । ସେଥିରେ ଲେଖାଅଛି—

"ଜମ୍ବୁଦ୍ୱୀପ ଭରତ ଖଣ୍ଡରେ, ଉତ୍କଳ ଦେଶ ମଧ୍ୟରେ ।
ଶ୍ରୀଯାଜନଗ୍ର ସନ୍ନିକଟେ । ଏହାର ବ୍ରହ୍ମୀନଦୀ ତଟେ ।
କ୍ଷତ୍ରିୟ ବଂଶ କୀର୍ତ୍ତିକର । ଇନ୍ଦ୍ରଜିତ ସାମନ୍ତବର ।
ମୁଁ ଜ୍ୟେଷ୍ଠ କୁମର ତାଙ୍କର । ପ୍ରତିଷ୍ଠା ସାମନ୍ତ ସିଂହାର ।
ମୋ ନାମ ଜାଣ ଅଭିମନ୍ୟୁ, ମୋ ପ୍ରାଣ ପତି ନନ୍ଦସୂନୁ ।"

ଏବଂ ତାଙ୍କର ଅପ୍ରକାଶିତ ପ୍ରେମକଳା କାବ୍ୟରେ ଲେଖିଛନ୍ତି—

"ସୁବିହାର ଏଣୁ ଥିବାରୁ ସେ ଦେଶ,
ଗୋଲକୁଣ୍ଡ ନାମେ ଗ୍ରାମରେ ପ୍ରକାଶଯେ—

ସାମନ୍ତସିଂହାର ପଦ ତାଙ୍କର ବଂଶଗତ ଉପାଧି । ଏବଂ ଏହି ଉପାଧି ବଂଶ ପରମ୍ପରା କ୍ରମେ ଗଡ଼ି ଆସୁଅଛି ।

କଥିତଅଛି—ଇନ୍ଦ୍ରଜିତଙ୍କର ୮ଟି ସ୍ତ୍ରୀ ଥିଲେ । ହେଲେ କାହାର ସନ୍ତାନ ନଥିଲେ କିମ୍ବା ହେବାର ଆଶାମଧ୍ୟ ନଥିଲା । ଏଥିପାଇଁ ସମସ୍ତ ପରିବାର ଅତି ଦୁଃଖରେ କାଳାତିପାତ କରୁଥିଲେ । ଶୁଣାଯାଏ ପରମ ବୈଷ୍ଣବ ମହନ୍ତ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ପରାମର୍ଶ କ୍ରମେ ଇନ୍ଦ୍ରଜିତ ସାମନ୍ତସିଂହାର ଏକ ପୁତ୍ରେଷ୍ଟି ଯଜ୍ଞର ଆୟୋଜନ କରିଥିଲେ । ଉତ୍କଳ ସାହିତ୍ୟ ୧୮ଶ ଭାଗରେ ୭ ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି—"ଯଜ୍ଞାନ୍ତେ ସାମନ୍ତଙ୍କର ଅଷ୍ଟମା ପତ୍ନୀ ସ୍ୱପ୍ନରେ ଦେଖିଲେ ଯେ—ଜଣେ ବିଷ୍ଣୁଭକ୍ତ ଦିବ୍ୟ ପୁରୁଷ ତାଙ୍କ ହସ୍ତରେ ତୁଳସୀ ମାଳ ଓ ଚନ୍ଦନ ଦେଇ ଅନ୍ତର୍ହିତ ହୋଇ ଗଲେ । ଏହି ସ୍ୱପ୍ନଦର୍ଶନପରେ ତୁଳସୀମାଳାଧାରିଣୀ ଜନନୀ ଗର୍ଭ ଧାରଣ ପୂର୍ବକ ଯଥାକାଳରେ ବିଷ୍ଣୁଭକ୍ତ ପୁତ୍ର ପ୍ରସବ କଲେ ।"

କବିଙ୍କ ପିତା ଇନ୍ଦ୍ରଜିତଙ୍କର ପାଣ୍ଡିତ୍ୟ ନଥିଲେ ମଧ୍ୟ ସେ ଜଣେ ଧର୍ମପ୍ରାଣ ରସିକ ବ୍ୟକ୍ତି ଥିଲେ । ତାଙ୍କର ପିତା, ପ୍ରପିତା ଲକ୍ଷ୍ମୀମାଳି ଓ ବଙ୍କା ସାମନ୍ତ ସିଂହାରଙ୍କ ଭଳି ସେ ବୀର ପୁରୁଷ ଥିଲେ ଓ ତାଙ୍କର ସ୍ତ୍ରୀ ତୁଳସୀ ଦେବୀ ମଧ୍ୟ ଅତି ପରାପୁଣା, ଧର୍ମ ପରାୟଣା, ସରଳା ରମଣୀ ଥିଲେ । ଉଭୟ ପିତା ଓ ମାତାଙ୍କର ପ୍ରଭାବ ଅଭିମନ୍ୟୁଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା ।

ବାଲ୍ୟକାଳରୁ ଅଭିମନ୍ୟୁଙ୍କର ପିତା ତାଙ୍କର ପଢ଼ାପଢ଼ି ପ୍ରତି ଯତ୍ନବାନ ଥିଲେ । ସେଥିପାଇଁ ପରମ ଗୌଡ଼ୀୟ ବୈଷ୍ଣବ ସାମନ୍ତ କବିସୂର୍ଯ୍ୟ ବ୍ରହ୍ମାଙ୍କୁ ( ସାଧୁଚରଣ ଦାସ ) ଅଭିମନ୍ୟୁଙ୍କର ଶିକ୍ଷା ଓ ଦୀକ୍ଷାଗୁରୁ ରୂପେ ନିଯୁକ୍ତ କରିଥିଲେ । ସଦାନନ୍ଦ ଖୋର୍ଦ୍ଧା

ରାଜାଙ୍କଠାରୁ କବିସୂର୍ଯ୍ୟ ଉପାଧି ପ୍ରାପ୍ତହୋଇ ବାଲିଆ ଅଞ୍ଚଳରେ ବାସ କରୁଥିଲେ । ମାଧୁର୍ଯ୍ୟରସର ଉପାସକ, ପରମ ଗୌଡ଼ୀୟ ବୈଷ୍ଣବ ସଦାନନ୍ଦଙ୍କ କାବ୍ୟ କବିତାରୁ ଏହା ବେଶ ପ୍ରତିପାଦିତ ହୁଏ । ସେ ଚୌର ଚନ୍ଦ୍ରାମଣି, ଯୁଗଳ ରସାମୃତ ଲହରୀ, ପ୍ରେମ କଳ୍ପଲତା ପ୍ରଭୃତି ଗ୍ରନ୍ଥ ରଚନା କରି ଯାଇଛନ୍ତି ଓ ଏ ଗୁଡ଼ିକ ତାଙ୍କ କବି ପ୍ରତିଭାର ସୁସ୍ପଷ୍ଟ ପରିଚୟ ଦେଇ ଥାଏ । । ତେଣୁ ଅଭିମନ୍ୟୁ ଗୁରୁଙ୍କ ନିର୍ଦ୍ଦେଶରେ ବିଦଗ୍ଧମାଧବ, ଉଜ୍ଜ୍ୱଳ ନୀଳମଣି ପ୍ରଭୃତି ବୈଷ୍ଣବୀୟ ସଂସ୍କୃତ ଗ୍ରନ୍ଥ ଗୁଡ଼ିକ ଗଭୀର ଅନୁଧ୍ୟାନ ସହ ଅଧ୍ୟୟନ କରିଥିଲେ । ଏତଦ୍ ବ୍ୟତୀତ ବିଭିନ୍ନ ସଂସ୍କୃତ ଅଳଙ୍କାରିକ ଗ୍ରନ୍ଥ, ବ୍ୟାକରଣ ଧର୍ମ ସମ୍ବନ୍ଧୀ ପୁସ୍ତକ ଶିକ୍ଷା କରିଥିଲେ । ପାର୍ସି, ବଙ୍ଗଳା, ହିନ୍ଦୀ ପ୍ରଭୃତି ଆଞ୍ଚଳିକ ଭାଷା ମଧ୍ୟ ତାଙ୍କୁ ଜଣାଥିଲା ।

ଗୁରୁ ସଦାନନ୍ଦ କବିଗୁରୁ ଉପେନ୍ଦ୍ରଙ୍କ ଦ୍ୱାରା ଯେପରି ପ୍ରଭାବିତ ହୋଇଥିଲେ ନିଜର ଶିଷ୍ୟ ଅଭିମନ୍ୟୁଙ୍କୁ ମଧ୍ୟ ସେହି ସାହିତ୍ୟ ପ୍ରତି ଆକୃଷ୍ଟ କରାଇଥିଲେ । ତେଣୁ, ସଦାନନ୍ଦ ଅଭିମନ୍ୟୁଙ୍କର ଧର୍ମଗୁରୁ ଓ ଶିକ୍ଷାଗୁରୁ ହେଲେ ମଧ୍ୟ କବିକୁଳ କଞ୍ଜ ଭଞ୍ଜ ହେଉଛନ୍ତି ତାଙ୍କର କାବ୍ୟଗୁରୁ । ସେଥିପାଇଁ ଅଭିମନ୍ୟୁ ଭଞ୍ଜଙ୍କର ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରଭୃତି ମୁଖ୍ୟ କାବ୍ୟ ଗୁଡ଼ିକ ଅତି ସତର୍କତାର ସହ ଅଧ୍ୟୟନ କରିଥିଲେ ।

ବାଲ୍ୟକାଳରୁ ଅଭିମନ୍ୟୁଙ୍କର କବିତ୍ୱର ସ୍ଫୁରଣ ହୋଇଥିଲା । ତାଙ୍କ ହୃଦୟରେ କୃଷ୍ଣଭକ୍ତିର ସଙ୍କୁର ପ୍ରାଥମିକ କବିତା

ମାନଙ୍କରେ ମଧ୍ୟ ଲକ୍ଷ୍ୟଣୀୟ । ନ'ବର୍ଷ ବୟସରେ ସେ ଲେଖିଥିଲେ—

"କାଉମଣ୍ଡା ଗଛ ସ୍ଥଳରେ ଗୋ, ମୋର ହୁଁ ଗୋ
କରମ ଯାହାର ସୁଫଳ ହୋଇବ
କୃଷ୍ଣଙ୍କୁ ଲଭିବ ସେହିଟି ଗୋ, ମୋର ହୁଁ ଗୋ ।
ଗଞ୍ଜେଇ ଗଛର ସ୍ଥଳ ରେ ଗୋ, ମୋର ହୁଁ ଗୋ
ବେଣୁ ବନୋମାଳୀ ଯେଣେ ଯାଉଥାଇ
ତେଣେହୁର ପଡୁଥାଇ ଗୋ, ମୋର ହୁଁ ଗୋ ।"

ତା'ଛଡ଼ା ତାଙ୍କର 'ବାଘ ଗୀତ', 'ଚଢ଼େଇଗୀତ' ମାନଙ୍କରୁ ତାଙ୍କର କବି ପ୍ରତିଭା ସ୍ପଷ୍ଟ ପ୍ରତିପାଦିତ ହୁଏ । ବାଘଶୀକାର ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ଶୂରବୀରମାନେ ଅଛନ୍ତି ଠିକ
ବାହାରିଲେ ମାରୁ ଅଛନ୍ତି ଡାକ
ଯେ ଅବା ଅଯୋଗେ ଯାଏ ବନକୁ
କେ ଘୁଞ୍ଚୁଅଛି ବାଜ ବଇରିକ ।

କେ କୁହା କୁମ୍ଭାକ; ଘୁଞ୍ଚି ଦିଅନ୍ତି ଧ ଧ ଧ ଧ ଡାକ ।"
ମେଘମାନଙ୍କେ ବାଘ ଶିକାର ତୁଳନା କରିବାକୁ ଯାଇ ଲେଖିଛନ୍ତି—

"ଘନପରି ଚ ତେ ଶିକାର ରଣ    ଚକ ମକ କକ ବିଜୁଳି ବାଣ
ଇନ୍ଦ୍ରଧନୁ ଧନୁ ବରଷେ ବାଣ    କାରକା ଶବଦ ଠେଙ୍ଗାର ଗୁଣ ।
ନାଳ ଗୁଳି ପୁଣି, ଚଢ଼େଇ ପରାଏ ନେଇ ପ୍ରାଣ" ।

ପକ୍ଷୀ ପୋଷିବାରେ ଅଭିମନ୍ୟୁଙ୍କର ଖୁବ୍ ସଉକ ଥିଲା । ସେଥିପାଇଁ ସେ ପକ୍ଷିମାନଙ୍କର ଗତି, ଗୀତି, ଜାତି, ପାଗ, ଯୋଗ, ଭୋଗ, ସ୍ଥାନ, ବଧାନ, ଗାନ, ଯୁଦ୍ଧ ପ୍ରଭୃତି ଠିକନଖି ଭାବରେ ଚଢ଼େଇ ଗୀତରେ ପ୍ରକାଶ କରିଛନ୍ତି । ଏଥିପାଇଁ ସେ ଏହାର ନାମ ଦେଇଛନ୍ତି "ଚଢ଼େଇ ପୋଷା ପଦ୍ଧତି" । ତେଣୁ ଲେଖିଛନ୍ତି—

"ଏ ଗୀତ ଚଢ଼େଇ ପୋଷା ପଦ୍ଧତି,
କଉତୁକୀ ମାନଙ୍କର ସଙ୍ଗାତ" ।

ନ ବର୍ଷ ବୟସରେ କୋମଳମତି ବାଳକର ଏପରି ସୃଷ୍ଟି ଭିତରେ ଭବିଷ୍ୟତର ପ୍ରତିଶ୍ରୁତି ନିହିତ ଥିଲା ।

୧୪ ବର୍ଷ ବୟସରେ ଅଭିମନ୍ୟୁ କେନ୍ଦ୍ରାପଡ଼ାର ପ୍ରସିଦ୍ଧ ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ପିତୃସ୍ୱସା । ବିମଳା ଦେବୀଙ୍କୁ ବିବାହ କରିଥିଲେ । ୧୯ ବର୍ଷ ବୟସରେ ତାଙ୍କର ପିତା ଇହଲୀଳା ସାଙ୍ଗ କଲେ । ତେଣୁ ଅଭିମନ୍ୟୁ ସଂସାର ବାସନାସକ୍ତ ନହୋଇ ସାନଭାଇ ସୁରଥଙ୍କ ହସ୍ତରେ ସମସ୍ତ ଦାୟିତ୍ୱ ଅର୍ପଣ କରି କୁଳ ଦେବତା ରାଧାମୋହନଙ୍କ ଲୀଳା ଗାନ କରି ସମୟ ଅତିବାହିତ କରିବାକୁ ଲାଗିଲେ । କିମ୍ବଦନ୍ତୀ କହେ, ତାଙ୍କ ସ୍ତ୍ରୀ ବିମଳା ଦେବୀଙ୍କର ଅତି ଅସ୍ୱାଭାବିକ ଭାବରେ ମୃତ୍ୟୁ ହେଲା । ଏଥିରେ ତାଙ୍କର ସଂସାର ପ୍ରତି ଗଭୀର ବିତୃଷ୍ଣା ଜାତ ହେଲା । ତେଣୁ ସେ କୁଳ ଦେବତା ରାଧାମୋହନଙ୍କ ଉପାସନାରେ ଭକ୍ତି ଗ୍ରନ୍ଥ ରଚନା କଲେ । ଶେଷ ଜୀବନରେ ବୃନ୍ଦାବନ ଯାତ୍ରାରମ୍ଭ କରି ଗୃହର ଅଳ୍ପ ଦୂରରେ ଅବଶ ହୋଇ ପଡ଼ନ୍ତେ କୁଳ ଦେବତା ରାଧାମୋହନଙ୍କୁ ଆସାଇ ତାଙ୍କର ଦର୍ଶନ କରୁ କରୁ କୁଷ୍ଠପ୍ରାପ୍ତି ହେଲେ । ଅଭିମନ୍ୟୁ

ସୁଲକ୍ଷଣା, ପ୍ରେମକଳା, ରସବତୀ, ପ୍ରେମ ଚିନ୍ତାମଣି, ବିଦଗ୍ଧ ଚିନ୍ତାମଣି, ଗ୍ରନ୍ଥ ରଚନା କରିଥିଲେ । ଏହା ମଧ୍ୟରୁ ଅନେକ ଅପ୍ରକାଶିତ । କେବଳ ବିଦଗ୍ଧ ଚିନ୍ତାମଣି ଓଡ଼ିଆ ସାରସ୍ୱତ କ୍ଷେତ୍ରରେ ଅମୂଲ୍ୟମଣି ହୋଇ ବିଦଗ୍ଧ ପାଠକମାନଙ୍କର ମନୋହରଣ କରୁଛି ।

## ବିଦଗ୍ଧ ଚିନ୍ତାମଣିର ନାମକରଣ

କୌଣସି ଗ୍ରନ୍ଥ ରଚନା କରି ତାହାର ନାମକରଣ କରିବାରେ ମଧ୍ୟ କବି ପ୍ରତିଭାର ପରିଚୟ ମିଳିଥାଏ । କଲ୍ଲୋଳ କବି ଦୀନକୃଷ୍ଣ 'ରସ କଲ୍ଲୋଳ' ଭଳି କାବ୍ୟ ସୃଷ୍ଟିକରି ଉପଯୁକ୍ତ ନାମକରଣ କରି ପାରି ନାହାଁନ୍ତି ବୋଲି ଭଞ୍ଜ ପ୍ରଭୃତିଙ୍କ ଦ୍ୱାରା ସମାଲୋଚିତ ହୋଇଥିଲେ । ତେଣୁ ସୁନ୍ଦର ପିଲାଟିଏ ଜନ୍ମଦେଇ ତା'ର ନାମକରଣ କରିବାରେ ପିତାମାତା ଯେପରି ଆନନ୍ଦ ଅନୁଭବ କରିଥାନ୍ତି, କବିତା ରୂପୀ ବନିତାର ନାମ କରଣରେ ମଧ୍ୟ କବି ପ୍ରତିଭାର ସୂଚନା ଦେଇ ଦିବ୍ୟାନନ୍ଦ ଲାଭକରେ । ଆଲୋଚ୍ୟ କାବ୍ୟର ନାମକରଣ ସାର୍ଥକତା ପ୍ରତି ଦୃଷ୍ଟିଦେଇ ବିଚାର କରି ବସିଲେ ଅଭିମନ୍ୟୁଙ୍କର କବିପ୍ରତିଭାର ପରିଚୟ ମିଳିଥାଏ । ବିଶେଷ କରି ଓଡ଼ିଆ ସାହିତ୍ୟର ରୀତିଯୁଗରେ କାବ୍ୟର ନାମକରଣରେ କବି ସତର୍କତା ଅବଲମ୍ବନ କରିଥିଲେ ବୋଲି ମନେହୁଏ । ରୀତିଯୁଗ ବା ଭଞ୍ଜ ଯୁଗରେ କାବ୍ୟର ନାମକରଣରେ ପାଣ୍ଡିତ୍ୟ ଓ ବିଚାରଶୀଳତାର ପରିଚୟ ମିଳିଥାଏ । କିନ୍ତୁ ଶାରଳା କିମ୍ବା ପଞ୍ଚସଖା ଯୁଗରେ ଏହା ନଥିଲା ।

ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିର ନାମକରଣ କରିବାକୁ ଯାଇ ଦୁଇଟି ଲକ୍ଷ୍ୟ ସାଧନ କରିଛନ୍ତି । ଫଳରେ କୁହା ଯାଇପାରେ ସେ-ସମ ଦୁଇଟି ଗ୍ରନ୍ଥଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ପରନ୍ତୁ ଗୌଡ଼ୀୟ ବୈଷ୍ଣବ ଭକ୍ତ ରୂପଗୋସ୍ୱାମୀଙ୍କ 'ବିଦଗ୍ଧ ମାଧବ' ନାଟକର ପ୍ରଭାବ ଏଥିରେ ବିଦ୍ୟମାନ । ରୂପଗୋସ୍ୱାମୀ ଖ୍ରୀ ୧୫୩୩ରେ ତାଙ୍କ 'ବିଦଗ୍ଧ ମାଧବ' ନାଟକ ସଂସ୍କୃତରେ ରଚନା କରିଥିଲେ । ରାଧାକୃଷ୍ଣଙ୍କର ବ୍ରଜଲୀଳା ଅତି ଚମତ୍କାର ଭାବରେ ଏଥିରେ ବର୍ଣ୍ଣିତ ହୋଇଛି । ଏହା ସାଧାରଣରେ ବୋଧ୍ୟ ନୁହେଁ । କାରଣ ଏହା ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ପରିପୂର୍ଣ୍ଣ । ଏହା ତତ୍ତ୍ୱପୂର୍ଣ୍ଣ ଓ ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ସାବଲୀଳ ଭଙ୍ଗୀରେ ଗତି କରିଛି । ଏହି ନାଟକରେ ନାୟକ ମାଧବ ଓ ଅର୍ଥାତ ଗୋପବନ୍ଧୁଙ୍କୁ ବିଦଗ୍ଧ ରୂପେ ବର୍ଣ୍ଣନା କରାଯାଇଛି । ରୂପଗୋସ୍ୱାମୀ ସ୍ୱୀୟ 'ଭକ୍ତି-ରସାମୃତ-ସିନ୍ଧୁ'ରେ ବିଦଗ୍ଧ ଶବ୍ଦର ଅର୍ଥ କରିବାକୁ ଯାଇ ଲେଖିଛନ୍ତି—

"କଳା ବିଳାସ ଦିଗ୍ଧାତ୍ମା ବିଦଗ୍ଧ ଇତି କୀର୍ତ୍ତ୍ୟତେ"
(ଦକ୍ଷିଣ ବିଭାଗ, ୧ମ ଲହରୀ )

ଯେ କଳା ବିଳାସରେ ଚତୁର, ସେ ବିଦଗ୍ଧ । ସେ ପୁଣି ସେହି ଭକ୍ତି ରସାମୃତ ସିନ୍ଧୁ ଦକ୍ଷିଣ ବିଭାଗ ୧ମ ଲହରୀରେ 'ବିଦଗ୍ଧ' ଶବ୍ଦର ବ୍ୟାଖ୍ୟାକରି ଲେଖିଛନ୍ତି—

"ଗୀତଂ ଗୁମ୍ଫତି, ତାଣ୍ଡବଂ ଘଟୟତି, ବ୍ରୂତେ ପ୍ରହେଳୀକ୍ରମାନ୍
ବେଣୁଂ ବାଦୟତେ, ସ୍ରଜଂ ବିରଚୟତ୍ୟାଲେଖ୍ୟ ମଭ୍ୟସ୍ୟତି
ନିର୍ମାତି ସ୍ୱୟମିନ୍ଦ୍ର ଜାଲ ପଟଳୀଂ, ଦ୍ୟୁତେ ଜୟତ୍ୟୁନ୍ମନାନ
ପଶ୍ୟୋଦ୍ଧାନ କଳା ବିଳାସ ବସତି କୃଷ୍ଣଂ ହରିଃ କ୍ରୀଡତି ।"

ଅର୍ଥାତ ମାଧବ, ସେ ସଙ୍ଗୀତ ରଚନା କରନ୍ତି, ନୃତ୍ୟ କରନ୍ତି, ବିଭିନ୍ନ ଚାତୁର୍ଯ୍ୟପୂର୍ଣ୍ଣ କଥା କହନ୍ତି, ବଂଶୀ ବାଦନ କରନ୍ତି, ମାଳା ରଚନା କରନ୍ତି, ଚିତ୍ରବିଦ୍ୟା ଅଭ୍ୟାସ କରନ୍ତି । ଉଦ୍ଦାମ ବ୍ୟକ୍ତିକୁ ପଶାଖେଳରେ ପରାସ୍ତ କରନ୍ତି, ଏବଂ ସାତିଶୟ କଳା ବିଳାସର ବସତି ସ୍ଥଳ ହୋଇ ଆଶ୍ଚର୍ଯ୍ୟ ଭାବରେ କ୍ରୀଡ଼ା କରନ୍ତି । ରୂପ-ଗୋସ୍ୱାମୀ ନିଜ ନାଟକରେ ଶ୍ରୀକୃଷ୍ଣଙ୍କୁ ବିଦଗ୍ଧ ରୂପେ ଚିତ୍ରଣ କରି ଥିବାରୁ ଅଭିମନ୍ୟୁ ଏହି କଳା ବିଳାସ ବିଦଗ୍ଧାତ୍ମା ଶ୍ରୀକୃଷ୍ଣଙ୍କୁ ମଧ୍ୟ କାବ୍ୟରେ ନାୟକ ରୂପେ ଗ୍ରହଣ କରି କାବ୍ୟର ରଚନା କରିଛନ୍ତି । କିନ୍ତୁ ଅଭିମନ୍ୟୁ ରୂପଗୋସ୍ୱାମୀଙ୍କର ବିଦଗ୍ଧ ମାଧବ ନାଟକରୁ ବିଦଗ୍ଧ ଶବ୍ଦଟି ଗ୍ରହଣ କରିଥିଲେ ମଧ୍ୟ 'ମାଧବ' ନାମଟି ଗ୍ରହଣ କରିନାହାନ୍ତି । ସେ ସ୍ଥାନରେ ସେ 'ଚିନ୍ତାମଣି' ଶବ୍ଦଟି ଗ୍ରହଣ କରିଛନ୍ତି । ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ ଚିନ୍ତାମଣି, କଳ୍ପତରୁ ପ୍ରଭୃତି ନାମରେ ମଧ୍ୟ ସମ୍ବୋଧନ କରନ୍ତି । ଚିନ୍ତାମଣି ହେଉଛି କଳ୍ପ ପ୍ରସ୍ତର । ସେ ଅଭିଳଷିତ ଫଳଦାନ କରିଥାଏ । ତେଣୁ ଭଗବାନ କୃଷ୍ଣ ଭକ୍ତର କାମନା ପୂର୍ଣ୍ଣକରନ୍ତି ବୋଲି ସେ ହେଉଛନ୍ତି କାମନା କଳ୍ପତରୁ ଏବଂ ଚିନ୍ତାମଣି । ତେଣୁ ଭକ୍ତ ଅଭିମନ୍ୟୁ ଲେଖିଛନ୍ତି—

"କାମନା କଳ୍ପତରୁ ଚିନ୍ତାମଣି ନାମ;
କଳ୍ପି କବିତ୍ୱ ବର୍ଣ୍ଣିବାକୁ ଉଦ୍ୟମ ।"

କବି ଅଭିମନ୍ୟୁଙ୍କର ଶିକ୍ଷାଗୁରୁ ଓ ଦୀକ୍ଷାଗୁରୁ ପରମ ବୈରାଗୀପ୍ରିୟ ବୈଷ୍ଣବ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା 'ପ୍ରେମ ଚିନ୍ତାମଣି' ରଚନା କରିଥିଲେ । ଏଥିରେ "ନନ୍ଦ ନନ୍ଦନ ଗୋପୀନାଥ"ଙ୍କ

କଥା ବର୍ଣ୍ଣନା କରାଯାଇଛି । ଏହି ବିଦଗ୍ଧ ଚିନ୍ତାମଣିରେ ସେହି ଚୌର ଚିନ୍ତାମଣିର ପ୍ରଭାବ ମଧ୍ୟ ଅତି ସୁସ୍ପଷ୍ଟ । ସେଥିପାଇଁ ଅଭିମନ୍ୟୁ ଲେଖିଛନ୍ତି--

"ଗୁଣ ଗ୍ରାହକେ ପାଇବେ ଚିନ୍ତଲ ସୁପ୍ରେମ
ଗୀତ ହେବ ବିଦଗ୍ଧ-ଚିନ୍ତାମଣି ନାମ ହେ !"

ତେଣୁ କବି ଚିନ୍ତାମଣିଙ୍କୁ ସ୍ମରଣ କରି କାମନା ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ସ୍ୱୀୟ ଗୁରୁଙ୍କର କାବ୍ୟ ନାମାଂଶକୁ ଗ୍ରହଣକରି ନିଜ କାବ୍ୟ ନାମକରଣ କରିଛନ୍ତି । ଅତଏବ କବି ଅଭିମନ୍ୟୁ 'ବିଦଗ୍ଧ ମାଧବ ନାଟକରୁ 'ବିଦଗ୍ଧ' ଓ 'ଚୌର ଚିନ୍ତାମଣି'ରୁ 'ଚିନ୍ତାମଣି' ଶବ୍ଦ ଗ୍ରହଣ କରି ନିଜର କାବ୍ୟର ନାମ ବିଦଗ୍ଧ ଚିନ୍ତାମଣି' ରଖିଛନ୍ତି ।

ରୀତିଯୁଗରେ ନାୟକର ଗୁଣ ଓ ନାମ ଅନୁଯାୟୀ କାବ୍ୟର ନାମକରଣ କରିବା ଏକ ରୀତି ଥିଲା । ସେଥିପାଇଁ କବି ଅଭିମନ୍ୟୁ କାବ୍ୟର ନାୟକ ଶ୍ରୀକୃଷ୍ଣଙ୍କର ଗୁଣ ଅନୁସାରେ ନାମକରଣ କରି 'ବିଦଗ୍ଧ ଚିନ୍ତାମଣି' ନାମ ଦେଇଛନ୍ତି ।

ବିଦଗ୍ଧ ଚିନ୍ତାମଣି ନାମ କରଣ ସମ୍ପର୍କରେ ଆଉ ଏକମତ ମଧ୍ୟ ପ୍ରତିପାଦନ କରାଯାଇ ପାରେ । ପଣ୍ଡିତମାନଙ୍କୁ ବିଦଗ୍ଧ କୁହାଯାଏ । ଚିନ୍ତାମଣି ହେଉଛି କାମନା ପୂର୍ଣ୍ଣକାରୀ ଏକ ଶିଳା । ତେଣୁ ବିଦଗ୍ଧ ଅର୍ଥାତ ରସିକ-ପଣ୍ଡିତ ମାନଙ୍କର ଏ କାବ୍ୟ କାମନା ପୂର୍ଣ୍ଣ କାରଣୀ । ପଣ୍ଡିତମାନେ କାବ୍ୟ ଅଧ୍ୟୟନ କରି ଯାହା ଯାହା ପାଇବାକୁ ଇଚ୍ଛା କରନ୍ତି, ତାହା ସମସ୍ତ ଏଥିରେ ନିହିତ ହୋଇ ରହିଛି । ଉଆଁସ ଅନ୍ଧାର ଅଜ୍ଞାନକୁ ଦୂର କରିବାକୁ

ଚନ୍ଦ୍ରମା ସ୍ୱରୂପ, ତେଣୁ ଧୀର ମାନଙ୍କର ସୁଖସୀମା । ଏଥିରେ ଯମକ, ଚିତ୍ରକାବ୍ୟ, ପ୍ରବନ୍ଧ ପ୍ରଭୃତି ରହିଛନ୍ତି । ତେଣୁ ବୁଧ ମନବୋଧ । ଏହା ନ୍ୟାୟାଦି ଶାସ୍ତ୍ର ପୁରାଣ ବେଦାଗମ୍ୟ କାବ୍ୟ" ନ୍ୟାସ କଲା ଲୋକର ଶ୍ରବ୍ୟ ହୋଇବ । ଛଇଳ ଲୋକ କଣ୍ଠରେ ଏହା ନବ ଗୁଣବନ୍ତ ଛବିର ରୂପ ନେବ । ତେଣୁ ଅଭିମନ୍ୟୁ କହିଛନ୍ତି— ବିଦଗ୍ଧ, ବିଦଗ୍ଧ ଚିନ୍ତାମଣି ଏ, ଶ୍ୟାମ ସାମନ୍ତ ସିଂହାର କରଇ ଲଯେ"। ଏହି ସବୁ ଦୃଷ୍ଟିରୁ ବିଚାର କରି କାବ୍ୟର ନାମକରଣ ସାର୍ଥକତା ପ୍ରତିପାଦନ କରାଯାଇପାରେ ।

ଏତଦ୍‌ବ୍ୟତୀତ ସମାଲୋଚକମାନେ ନାମ କରଣରେ ଅନ୍ୟାନ୍ୟ ବ୍ୟାଖ୍ୟା ମାନ କରିଥାନ୍ତି । କେତେକ କହନ୍ତି, ବିଦଗ୍ଧ ବା ପଣ୍ଡିତ ମାନଙ୍କର ଚିନ୍ତାର ମଣି ସ୍ୱରୂପ ଅର୍ଥାତ ପଣ୍ଡିତ ମାନଙ୍କର ମୁଖ୍ୟ ଚିନ୍ତାଧାରା ଏଥିରେ ନିହିତ ହୋଇ ରହିଛି । ଆଉ କେତେକ କହନ୍ତି ବିଦଗ୍ଧ ବା ବିରହରେ ବିଶେଷ ରୂପେ ଦଗ୍ଧ ହୋଇଛନ୍ତି ଯେଉଁ ଚିନ୍ତା, ତାହାର ମଣି ସ୍ୱରୂପ ଏହି କାବ୍ୟ । ଅର୍ଥାତ ରାଧା ଓ କୃଷ୍ଣଙ୍କର ପ୍ରେମ ବିଳାସର ଉତ୍କୃଷ୍ଟ ଗ୍ରନ୍ଥ ଏହା ବିଦଗ୍ଧ ଚିନ୍ତାମଣି । ରାଧା ଆଉ କୃଷ୍ଣ ପ୍ରେମ ଭାବନାରେ ଦଗ୍ଧୀଭୂତ ହୋଇ ପଡ଼ିଥିବା ବିଷୟ ଏଥିରେ ବର୍ଣ୍ଣିତ ହୋଇ ଥିବାରୁ ଏପରି ନାମ କରଣ କରାଯାଇଛି ।

## ଅଭିମନ୍ୟୁଙ୍କ ସୌନ୍ଦର୍ଯ୍ୟ ବୋଧ

ପଲ୍ଲୀ ମାଲିକା ଏହି ଉତ୍କଳ । ଏହାର ଆଲୁଳାୟିତ ବନାନ୍ତର ଶ୍ୟାମଘନ ଛବି, ତରଙ୍ଗାୟିତ ହ୍ରଦର ନୀଳ ବେଣୀ, ସାଗରବାରର ଉର୍ମ୍ମିଳୋଳ କଲ୍ଲୋଳ ବେଳାଭୂମି, ନର୍ତ୍ତନରତ ମୁଖର ଗିରି ନିର୍ଝର

କାଳେ କାଳେ କବି ଓ ଭାବୁକ ମାନଙ୍କୁ ଅଦମ୍ୟ ପ୍ରେରଣା ଦେଇ ଆସିଛି । ତେଣୁ ଏହି କବି ଓ ଭାବୁକ ସବୁକାଳରେ ପ୍ରକୃତିର ଏହି ପୁଣ୍ୟପୀଠରେ ତାର ନୈବେଦ୍ୟ ବାଢ଼ି ଆସିଛି । ଉଇହୁଙ୍କା ମଧ୍ୟରେ ଯେ ହିମାଳୟର କଳ୍ପନା କରିପାରେ । କଙ୍କଡ଼ାହିଁ ମଧ୍ୟରେ ହିରୁ କଙ୍କରର ଯେ କଳ୍ପନା କରେ ସେ ହୁଏ କବି । ତେଣୁ ସେ ଦେଖି ଦେଖାଏ, ହସି ହସାଏ, କାନ୍ଦି କନ୍ଦାଏ, ଚାଖି ଚଖାଏ । କବି ତା'ର ପ୍ରତିଭା ବଳରେ ଅସମ୍ଭବକୁ ସମ୍ଭବ କରିପାରେ । ଦୃଷ୍ଟି ତାର ସୂକ୍ଷ୍ମାତିସୂକ୍ଷ୍ମ । ଆମ ଆଖିରେ ଯାହା ପାଙ୍କୁଆ ଲୁଣିଆ, କବି ଆଖିରେ ତାହା ଉଜ୍ଜଳ କମଳାଙ୍କର ବିଳାସ ଦୀର୍ଘିକା ଓ ମରାଳ ମାଳିକା ଯୁକ୍ତ । ତେଣୁ କବିର-ସୌନ୍ଦର୍ଯ୍ୟ ବୋଧ ଓ ତା'ର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତ ସାଧାରଣ ସ୍ତରରୁ ବହୁତ ଉଚ୍ଚରେ । ମନୁଷ୍ୟ ମଧ୍ୟରେ ଦିବ୍ୟଜ୍ଞାନ ଦେଖି କେବଳ ଯେ ଭଗବାନ ସନ୍ତୋଷ ପ୍ରକାଶ କରିଛନ୍ତି ତାହା ନୁହେଁ, କବି ମଧ୍ୟ ତାହା ଅନୁଭବ କରିଛି । ମନୁଷ୍ୟର ଦୟା, କ୍ଷମା, ତିତିକ୍ଷା ରେ ଅଭିଭୂତ ହୋଇ, ତାର ରୂପରେ ଆକୃଷ୍ଟ ହୋଇ କବି ଯୁଗ ଯୁଗ ଧରି ତା'ର ପୂଜା କରି ଆସିଛି । ତେଣୁ କବି ଜାତିଟା ହିଁ ସୌନ୍ଦର୍ଯ୍ୟର ପୂଜାରି । ସେ ଜାହ୍ନବୀତଟୀ ମଳୟ ପବନ ସୃଷ୍ଟି କରି ରସିକ ତରୁକୁ ପଲ୍ଲବିତ କରିଛି । ବିଶେଷ କରି ଓଡ଼ିଆ ସାହିତ୍ୟର ରୀତିଯୁଗର କବିମାନେ ପ୍ରକୃତି ତଥା ମାନବର ବାହ୍ୟ ରୂପକୁ ଯେପରି ଭାବରେ ବର୍ଣ୍ଣନା କରିଛନ୍ତି, ଅନ୍ୟ କୌଣସି ଯୁଗରେ କବି ଏହା କରିବାକୁ ସକ୍ଷମ ହୋଇ ପାରି ନାହାଁନ୍ତି ।

ଯୁଗର ରୁଚି, ମରମୀଙ୍କୁ ଲକ୍ଷ୍ୟକରି ବସୁର କରି ବସିଲେ ସୌନ୍ଦର୍ଯ୍ୟ ପ୍ରେମୀ ଅଭିମନ୍ୟୁଙ୍କ ଆସନ ଅନେକ ଉଚ୍ଚରେ

ବୋଲି ନିଃସନ୍ଦେହରେ କୁହାଯାଇ ପାରିବ । କବିଗୁରୁ ଭଞ୍ଜଙ୍କର ଉପଯୁକ୍ତ ଶିଷ୍ୟ ଅଭିମନ୍ୟୁ ପ୍ରକୃତି ତଥା ମାନବ ସୌନ୍ଦର୍ଯ୍ୟର ଯେଉଁ ସନ୍ଧାନ ପାଇଛନ୍ତି, ତାହାକୁ ପୁଞ୍ଜି କରି ସେ ତାଙ୍କର କାବ୍ୟ ବିଦଗ୍ଧ ଚିନ୍ତାମଣିରେ କାରବାର କରିଛନ୍ତି । ପୂର୍ବରୁ ସୂଚିତ ହୋଇ ଯାଇଛି ଯେ, ପ୍ରକୃତି ତଥା ମାନବର ବାହ୍ୟରୂପ ବର୍ଣ୍ଣନା କରିବାରେ ରୀତିଯୁଗୀୟ କବିମାନେ ଧୁରୀଣ ଥିଲେ ।

ତେଣୁ ନିଜ କାବ୍ୟର ନାୟକ ନାୟିକାର ରୂପ ବର୍ଣ୍ଣନା କରିବାକୁ କୌଣସି କାବ୍ୟରେ ପଶ୍ଚାଦପଦ ହୋଇନାହାନ୍ତି । ଠିକ୍ ସେହି ରୀତିକୁ ରକ୍ଷାକରି କବି ଅଭିମନ୍ୟୁ ସ୍ୱରଚିତ କାବ୍ୟ ବିଦଗ୍ଧ ଚିନ୍ତାମଣିରେ ତାଙ୍କର ନାୟକ ନନ୍ଦନନ୍ଦନ ଓ ନାୟିକା ପ୍ରେମାନୁରାଗିଣୀ ରାଧାଙ୍କର ରୂପ କାବ୍ୟର ଛାନ୍ଦ ମାନଙ୍କରେ ବର୍ଣ୍ଣନା କରିବାକୁ ଭୁଲି ନାହାନ୍ତି । କବି ତୃତୀୟ ଛାନ୍ଦରେ ପୌଗଣ୍ଡ କାଳ ଶେଷ ହୁଅନ୍ତେ କିଶୋର କୃଷ୍ଣଙ୍କର ଯେଉଁ ଚିତ୍ତୋଲ୍ଲାସକାରୀ ବର୍ଣ୍ଣନା କରିଛନ୍ତି ତାହା ଭୁଲି ହେବାର ନୁହେଁ । କୃଷ୍ଣଙ୍କର ହନୁ ହନୁ ଆନ ରୀତିମାନ ଯେପରି ଖ୍ୟାତ ହୋଇଛି, ଗତି ମତିରୁ ଚଞ୍ଚଳତା ଅଧିରେ ପଳାଇଯାଇ ଯେପରି ନେତ୍ର ଗତିରେ ଆଶ୍ରୟଲାଭ କରିଛନ୍ତି, ସୁରସକୁ ମନ ଯେପରି ଭଜିଛି, ଭଙ୍ଗିମା ଗୁଡ଼ିକ ଯେପରି ପ୍ରକଟିତ ହୋଇଛି, ତାହା ବର୍ଣ୍ଣନାତୀତ । ତେଣୁ କବି ଅତି କୌଶଳରସହ ଲେଖିଛନ୍ତି—

"ସଂସାର ସାର କାନ୍ତିକି ଆଣିଲା ।
ଅମୃତ ମିଶାଇ ବାଟି ଗୁଣିଲା ।
ବିହିଏ ମୂରତିକି ନିର୍ମାଣିଲା ।

ମର୍କତ ରସାଣରେ ରସାଣିଲ ସେ,
ଉପମା ସୃଷ୍ଟି ଜଣିଲ ଯେ,
ମୋହନମନ୍ତ୍ରେ ଲାବନ୍ୟାସକର
ସାର ସଂସାରେ ଜଣିଲ ସେ ।

ଏରୂପ ଇନ୍ଦ୍ରନୀଳମଣି ଝଲକୁଛି, ଏ କଳାକମଳ ମର୍କତ ଆରଶି, ମନ ଆନନ୍ଦକୁ ଆକର୍ଷି ନିଏ । ଏହାର ଭଙ୍ଗିରେ ଯୋଗିଜନ ମଧ୍ୟ ରଙ୍ଗିଯିବ । ଏହାର ଘନରସ ନାଗରୀ ହୃଦ ସରସୀକୁ ମଧ୍ୟ ଉଚ୍ଛୁଳାଇ ଦିଏ । ସେ କୃଷ୍ଣ ସମବୟସ୍କ ସଖା ସାନ୍ନିଧ୍ୟ ଲାଭକରି ପତି-ବ୍ରତି-ସତି-ଧୃତି ସମ୍ପତ୍ତି କି ସମୂଳେ ଲୁଟି କଲେ । ନବଯୁବତୀ ପ୍ରେମ ଲମ୍ପଟରେ ବାଟରେ ଗୁତି ଫୁଲାଇ, କାହାମନକୁ ନାଟରେ ହରିଲେ ଓ କାହା ଲଲାଟରେ କସ୍ତୁରି ବୋଳିଲେ । କବି ଏହିପରି କୃଷ୍ଣଙ୍କର କୈଶୋରରେ ଔଦାର୍ଯ୍ୟଭଙ୍ଗୀ, ସ୍ନେହଭଙ୍ଗୀ, ଗର୍ବ ଭଙ୍ଗୀ, ତର୍ଜନ ଭଙ୍ଗୀ, ବିରକ୍ତି ଭଙ୍ଗୀର ବର୍ଣ୍ଣନା ଅତି ସୁନ୍ଦର ଭାବରେ କରି ପାରିଛନ୍ତି । ଆଳଙ୍କାରିକ ଭାଷା ବନ୍ଧନୀ ମଧ୍ୟରେ କୈଶୋର କାଳରେ ସାଧାରଣତଃ ଯାହା ଯାହା ପ୍ରକଟିତ ହେବାର କଥା, ତାହାର ଏକ ସ୍ୱଭାବ ସୁନ୍ଦର ବର୍ଣ୍ଣନା ଯେ କୌଣସି ପାଠକକୁ ଆକୃଷ୍ଟ କରିବ । କୃଷ୍ଣଗତ ପ୍ରାଣ କବି ଅଭିମନ୍ୟୁ ପରମ ବୈଷ୍ଣବ । ତାଙ୍କ ନିକଟରେ ଶ୍ରୀକୃଷ୍ଣ "ପ୍ରବଳ ପ୍ରତାପୀ ଚକ୍ରଧର ବିଷ୍ଣୁ ନୁହନ୍ତି । ସେ ନବଜଳଧର ଶ୍ୟାମ ମୁରଲୀ ଧର, ଗୋପୀ ମନମୋହନ । ସେ ଗୋପୀ ବଦନାମ୍ବୁଜ ପାନ କରିବାକୁ ଲୋଲୁପ ଦୃଷ୍ଟିରେ ଚାହିଁ ରହିଥାନ୍ତି । ସେ ମଧ୍ୟ କୋଳପାଇଁ ଅଳିକରି ଧରଣୀ ଧୂଳିରେ ଧୂସରିତ ହୁଅନ୍ତି । ମାନବ ପକ୍ଷରେ ସମ୍ଭବ ହେଲାଭଳି ପ୍ରେମ ରସ ଆଘ୍ରାଣ କରିବା ଓ ରାଗାନୁଗା ଭକ୍ତି ପ୍ରଚାର କରିବା ତାଙ୍କର ଉଦ୍ଦେଶ୍ୟ ।

ସେଥିପାଇଁ ଶ୍ରୀକୃଷ୍ଣଙ୍କୁ ଯେ ବିଦଗ୍ଧ ରୂପେ ଚିତ୍ରଣ କରିବାକୁ ଲେଖନୀ ଚାଳନା କରିଛନ୍ତି । ତେଣୁ କବି ଅଭିମନ୍ୟୁ ମୁଗ୍ଧ ବିହ୍ୱଳ ଚିତ୍ତରେ ସେହି ଶ୍ୟାମନନ୍ଦ ରୂପବିଭବକୁ ଅତି ଦକ୍ଷତାର ସହ ବର୍ଣ୍ଣନା କରିଛନ୍ତି ।

ଏଣେ କବି ରାଧା ରୂପ ବର୍ଣ୍ଣନାରେ ଯେଉଁ ସୌନ୍ଦର୍ଯ୍ୟ ପ୍ରୀତିର ସୂଚନା ଦେଇଛନ୍ତି, ତାହା ଆହୁରି ଚମତ୍କାର ପ୍ରଦ । ରାଧାଙ୍କ ଜନ୍ମତତ୍ତ୍ୱ ସାଧୁ ଶାସ୍ତ୍ରରେ ଖୋଜିବାକୁ ନିର୍ଦ୍ଦେଶଦେଇ ପ୍ରେମାଧାମା ରାମାଙ୍କର ରୂପ ଆଙ୍କିବାରେ ମୁଗ୍ଧ ବିହ୍ୱଳ । ବୈଷ୍ଣବ ତତ୍ତ୍ୱଦର୍ଶୀମାନେ ରାଧାଙ୍କୁ ଜୀବ, ଆଦ୍ୟାଶକ୍ତି, ହ୍ଲାଦିନୀ ଶକ୍ତିର ରୂପାନ୍ତର ବୋଲି କଳ୍ପନା କଲେ ମଧ୍ୟ ଅଭିମନ୍ୟୁଙ୍କର ରାଧା ମଧୁର ରସର ଘନୀଭୂତ ବିଗ୍ରହ । ସେ ବିଗ୍ରହ ନିଜେ ନିଜରହିଁ ଉପମା । ସେ ରଣୀ, ରସ, ଅଗ୍ନି ଖାଜରୁ ଅଧିକ ହୋଇ ଥିବାରୁ ରାଧିକା ନାମରେ ପରିଚିତା । ସେ ହସ କାନ୍ଦ, ଲଜ୍ଜା ଲୁହ, ହର୍ଷ ବିଷାଦ, ପୀଡା ପୁଲକର ରାଧା, ଯାହା ସାଧାରଣ ମଣିଷ ସ୍ତରରେ ସମ୍ଭବ । ତେଣୁ ନିପୁଣ ଶିଳ୍ପୀ ଅଭିମନ୍ୟୁ ସେହି ରସବତୀ ବିନୋଦିନୀଙ୍କର ବାଲ୍ୟକାଳଠାରୁ ଯୌବନାବସ୍ଥା ପର୍ଯ୍ୟନ୍ତ ଅତି ଆଳଙ୍କାରିକ ଭାଷାରେ ପ୍ରକାଶ କରିଛନ୍ତି । ରାଧାଙ୍କର ଦୋଳି ଦୋଳନ, ଧୂଳି ମଣ୍ଡନ, ପ୍ରଭୃତି ବର୍ଣ୍ଣନା ଅତି ସ୍ୱାଭାବିକ । କିନ୍ତୁ ବେଣୀ ଗଉରୀ ବୟସ ଅତି କ୍ରମି ବାଲା ସନ୍ଧିକାଳ ହେଲ ପରେ କବି ରାଧାଙ୍କର ରୂପ କଳିବାକୁ ସହସ୍ରାକ୍ଷ ହୋଇ ଉଠିଛନ୍ତି । କବି ରାଧାଙ୍କର ଖୁରୁ ଗୁରୁ ଉରୁ, ହରିଧର ରଜତ ରୂପୀ କନକ ମଣ୍ଡିଳ ଶରୀର ବର୍ଣ୍ଣନା କରିବାରେ ମୁଖର ହୋଇ ଉଠିଛନ୍ତି ଓ ଉପମା ଜଗତରେ ରାଧା

ଅଙ୍ଗ ସଙ୍ଗ ଦେବାକୁ କାହାରିକୁ ନପାଇ ସେଗୁଡ଼ିକୁ ଅପମାନ ଦେଇ ଯାଉଛନ୍ତି । ତେଣୁ

"ଉପମାମାନେ ଅପମାନେ ପଡ଼ିଲେ ସୁଷମା ସମ ନୋହିବାରେ
ଉମାରମା ରତି ବାଣୀ ଆଣି ଖ୍ୟାତି ରହିଲା ନାମ ଆଶ୍ରୟରେ
କାନ୍ତି କି, ଅଲକ୍ଷ୍ୟରେ ଚିକ୍କ ଚମ୍ପକ
କେତକୀ କଣ୍ଟକଦୁର୍ଗେ ଆଶ୍ରେ କଲା ଅଗ୍ନିରେ ଦହିଲା କନକ ।"

କବି ରାଧାଙ୍କର ରୂପ ବର୍ଣ୍ଣନା କରିବାରେ ଏହିପରି ୨୦ ପଦ ବ୍ୟୟ କରି ନିଜର ସୌନ୍ଦର୍ଯ୍ୟ ପ୍ରେମର ପରିଚୟ ଦେବାକୁ ସକ୍ଷମ ହୋଇ ପାରିଛନ୍ତି । କବି ତାଙ୍କର କାବ୍ୟ ଗୁରୁ କବିସମ୍ରାଟ ଉପେନ୍ଦ୍ର-ଭଞ୍ଜଙ୍କ ପଦାଙ୍କ ଅନୁସରଣକରି ନାୟିକା ବର୍ଣ୍ଣନା କରିବାରେ ଏପରି ପାରଦର୍ଶିତା ଲାଭ କରିଛନ୍ତି, ଯାହାକି ସମୟ ସମୟରେ ଏପରି କ୍ଷେତ୍ରରେ ସ୍ୱୟଂ ଗୁରୁ ମଧ୍ୟ ହାର ମାନିବେ । ତେଣୁ ଏହି ରୂପ ବର୍ଣ୍ଣନାରେ ସେ ଶ୍ରୀହର୍ଷ, କାଳିଦାସ, ବାଣଭଟ୍ଟଙ୍କ ନିକଟରେ ଯେତେ ନୁହଁନ୍ତି ଭଞ୍ଜଙ୍କ ନିକଟରେ ଅଧିକ ଋଣୀ । କବି ଚିରନ୍ତନ ପ୍ରେମିକା ମାନସୀ ରାଧାଙ୍କୁ ବିଶ୍ୱସୁନ୍ଦରୀ ରୂପେ କଳ୍ପନା କରିଛନ୍ତି । କିନ୍ତୁ ଏଠାରେ ଲକ୍ଷ୍ୟ କରିବାର କଥା ଯେ ଅଭିମନ୍ୟୁ ରାଧା ଓ କୃଷ୍ଣଙ୍କୁ ଅତିମାନବିକତା ଦୃଷ୍ଟିରୁ ନୁହଁ ମାନବିକତା ଦୃଷ୍ଟିରୁ ଚିତ୍ରଣ କରିଛନ୍ତି । ସେମାନେ ହେଉଛନ୍ତି ରକ୍ତମାଂସ ଶରୀର ଗଢ଼ା ଗୋଟିଏ ଗୋଟିଏ ଜୀବ । ଏହି ମାନବୀୟ ରୂପ ମଧ୍ୟରେ କବି ଅରୂପର ସନ୍ଧାନ କରିଛନ୍ତି । ତେଣୁ ସେ କହିଛନ୍ତି—ଏରୂପ "ବିଶ୍ୱ ବିଭବ ଭବାବ୍ଧି ତାରଣ କାରଣ କେଉଁ ଅସମ୍ଭବ ।"

ରୀତିଯୁଗର କବିମାନଙ୍କର ବିଶେଷତ୍ୱ ଥିଲା ପ୍ରକୃତି ଚିତ୍ରଣରେ । କବି ପ୍ରକୃତିର ବାହ୍ୟରୂପ ଦେଖି ମୁଗ୍ଧ ହୋଇ ପଡ଼ି କାବ୍ୟରେ ତାହାକୁ ବିଭିନ୍ନ ସ୍ଥାନରେ ଉଦ୍ଧାର କରୁଥିଲେ । ପ୍ରକୃତିକୁ ପ୍ରକୃତି ଦୃଷ୍ଟିରୁ ସେମାନେ ଦେଖୁ ନଥିଲେ । ପ୍ରକୃତି ଏମାନଙ୍କ ନିକଟରେ ଆତ୍ମ କୈନ୍ଦ୍ରିକ ନହୋଇ ବସ୍ତୁ କୈନ୍ଦ୍ରିକ ହୋଇ ଉଠିଛି । ପ୍ରକୃତିର ଯେ ଏକ ସ୍ୱତନ୍ତ୍ର ଆତ୍ମା ଅଛି ଓ ତାର ସ୍ୱତନ୍ତ୍ର ଅବସ୍ଥିତି ଅଛି ସେ ଦୃଷ୍ଟିରୁ ସେମାନେ ତାହା ଚିତ୍ରଣ କରି ନାହାନ୍ତି । ଠିକ୍ ସେହିପରି ଭଞ୍ଜ କବି ଅଭିମନ୍ୟୁ ପ୍ରକୃତିକୁ ସ୍ୱତନ୍ତ୍ର ଭାବରେ ଚିତ୍ରଣ କରିନାହାନ୍ତି । ସେ ତାଙ୍କର ନାୟକ ନାୟିକାଙ୍କର ଆବଶ୍ୟକତା ଦୃଷ୍ଟିରୁ ପ୍ରକୃତିର ସାହାଯ୍ୟ ମାତ୍ର ଯାହା ନେଇଛନ୍ତି । ପ୍ରକୃତିର ବିଭିନ୍ନ ଉପାଦାନକୁ ଆଣି ତାହାକୁ ନାୟକ କିମ୍ବା ନାୟିକାର ବିଭିନ୍ନ ଅଙ୍ଗ ସଙ୍ଗେ ତୁଳନା କରି ତାର ଅସାରତା ପ୍ରତିପାଦନ କରିଛନ୍ତି । ତେଣୁ ସବୁବେଳେ ପ୍ରକୃତି ଏକ ପୃଷ୍ଠପଟ ରୂପେ କାର୍ଯ୍ୟ କରିଛି । ଏହା କାବ୍ୟ ଦୃଷ୍ଟିରୁ ଉଦ୍ଦୀପନ ବିଭାବ ବ୍ୟତୀତ କିଛି ନୁହେଁ । କବି ଚନ୍ଦ୍ର, ଚନ୍ଦନ, ତୁଳା, କଦଳୀ, ବିମ୍ବ, ଦ୍ରାକ୍ଷା, ନାରିକେଳ, କାଶକୁଶ, ଶୁକ ଶାରୀ ପ୍ରଭୃତିଙ୍କୁ ଆଣି ତୁଳନା କରିଛନ୍ତି ।

ଏତଦ୍‌ବ୍ୟତୀତ କବି ଆବଶ୍ୟକତା ଦୃଷ୍ଟିରୁ ପ୍ରତ୍ୟୁଷ ଓ ପ୍ରଦୋଷ ବର୍ଣ୍ଣନା ବହୁସ୍ଥାନରେ ଦେବାକୁ ଭୁଲି ନାହାନ୍ତି । ଉଜ୍ଜଳଠାରୁ ଆରମ୍ଭ କରି ବିଭିନ୍ନ ଋତୁର ବର୍ଣ୍ଣନା ନାୟକ ନାୟିକା ଅନୁଚିନ୍ତନ ଦୃଷ୍ଟିରୁ କବି ଅତି ନିଖୁଣ ଭାବରେ କରିଯାଇଛନ୍ତି । ଯୁଗଳ ସ୍ୱପ୍ନ ଦର୍ଶନ ସ୍ଥଳରେ କାର୍ତ୍ତିକ ପୂର୍ଣ୍ଣିମାର ପ୍ରଦୋଷ ବର୍ଣ୍ଣନା ଅନନ୍ୟ ସାଧାରଣ । ଏକ ଶାରଦୀୟ ରଜନୀର ସନ୍ଧ୍ୟାରେ ଏକ ଦିଗରେ ଅସ୍ତଗାମୀ ସୂର୍ଯ୍ୟ ଅନ୍ୟଦିଗରେ ନିତବାହିତ ଚନ୍ଦ୍ରକୁ

ଅମୃତ ଓ ଅନୁରାଗ ବୋଲି କଳ୍ପନା କରି କବି ଅନୁରାଗରୂପୀ ଜସ୍ନୁ ଚନ୍ଦ୍ରର ଘୋଷଣାକରି ଯେଉଁ ମନୋଜ୍ଞଚିତ୍ର ଅଙ୍କିଛନ୍ତି ତାହା ଯେକୌଣସି ପାଠକକୁ ଆକୃଷ୍ଟ କରିବ । ଏପରି ଏକ ସୁମଧୁର କଳ୍ପନା ଅନ୍ୟ କବି ନିକଟରେ କଳ୍ପନାତୀତ । ସେହିପରି ଚନ୍ଦ୍ର ବିକଶିତ ପୁଲକିତ ଯାମିନୀରେ ରାଧାଙ୍କର ବିଭ୍ରମ ଭାବକୁ ସୁରୁଇ ଦେବାକୁ ଯାଇ ଚନ୍ଦ୍ର ଜ୍ୟୋସ୍ନାର ଯେଉଁ ମନୋଜ୍ଞ ବର୍ଣ୍ଣନା ତାହା ବିମୂର୍ତ୍ତ ପ୍ରକାଶ କରେ । ଚନ୍ଦ୍ର ଜ୍ୟୋସ୍ନାରେ ଧରଣୀ ଏପରି ଧବଳକୃତ, ଯାହାଫଳରେ—

"ଶିବାଙ୍କୁ ହୋଇଲେ ଭ୍ରମ ଅଛନ୍ତି ନାହାଁନ୍ତି ଶ୍ୟାମ
ଶ୍ୟାମ ଗଙ୍ଗାଙ୍କୁ ଲୋଡ଼ିଗଲେ ଜଟା ପିଠାଇ
କୁସୁମ ବାସ ବ୍ରତତି ଅଦୃଷ୍ଟ ରଜାତ ଗତି
ମୋଡିହାର ବଣି ମଣି ଲଙ୍କାକୁ ପାଇ
ଭ୍ରମରେ ଭ୍ରମରେ ଭ୍ରମନ୍ତି ମଧୁପ ପରାଏ କୁମୁଦମା ଲୋଡ଼ନ୍ତି ।"

ସର୍ବଂସହା ଧରଣୀର ଏହି ରଜତ ଧବଳ ଅବସ୍ଥାରେ ରାଧାଙ୍କର ମଧ୍ୟ ଭ୍ରମ ଜାତ ହୋଇଛି ଓ ଏହି ପୃଷ୍ଠଭୂମି ଉପରେ ସେ ଚିନ୍ତା କରି ଗୁଳିଛନ୍ତି ।

କବି ସେହିପରି ପ୍ରଭାତ ବର୍ଣ୍ଣନା କରିବାକୁ ଯାଇ ନାୟିକା ଦେହଧରେ କିପରି ଲକ୍ଷଣମାନ ପ୍ରକଟିତ ହୋଇଛି ତାହା ଦର୍ଶାଇଛନ୍ତି । ଏତଦ୍‌ବ୍ୟତୀତ ପ୍ରଭାତରେ ରାଧାଙ୍କର ଅବସ୍ଥା ମଧ୍ୟ ବର୍ଣ୍ଣନା କରାଯାଇଛି ।

ଖଣ୍ଡିତାର ମଣ୍ଡିତା ଯେ କାଳେ କାଳ ହେଲା
କାଞ୍ଚନା ହୃଦ ବଞ୍ଚନା ଆନନ୍ଦିତ କଲା

ସ୍ୱାଧୀନ ଭର୍ତ୍ତୃକା ପଦ୍ମ ମାଳ ଉଲ୍ଲାସିଲା
ପ୍ରୋଷିତ ଭର୍ତ୍ତୃକା କୁମୁଦମାଳ ହାସିଲା ।" ପ୍ରଭୃତି

ଆଲୋଚ୍ୟ କାବ୍ୟରେ କବିଙ୍କର ସୌନ୍ଦର୍ଯ୍ୟବୋଧ ଏକାନ୍ତ ହୃଦୟଙ୍ଗମ କରହୁଏ । ଗୋପସୁତ ମାନଙ୍କର ଗୋଚାରଣ କରି ଯିବାବେଳରେ, ପ୍ରଭାତରେ ଗୋପସୁତଙ୍କ ସ୍ୱଭାବସୁନ୍ଦର ଆଲଙ୍କାରିକ ବର୍ଣ୍ଣନା ସମଗ୍ର ବୈଷ୍ଣବ ସାହିତ୍ୟ ଜଗତରେ ପରିଲକ୍ଷିତ ହୁଏନା । ଗୋପସୁତଙ୍କ ମେଳରେ; ରାମକୃଷ୍ଣଙ୍କର ଗୋଚାରଣ କାଳରେ

"ପୋଏ ସଜାଡ଼ି କାଛଟା ଭିଡ଼ି ଧାଡ଼ିକି ଧାଡ଼ି ଆଗେ ଦଉଡ଼ି
ମୋଡ଼ିକି ଯୋଡ଼ି ବୁଲନ୍ତି ବାଡ଼ି ଜନ୍ତୁକୁ ଆଡ଼ିକେ ।

କେହୁ ଘଉଡ଼ି ନଅଇ ତଡ଼ି କେହୁ ବାହୁଡ଼ି ମାରଇ ଉଡ଼ି
ବାନ୍ଧାକୁ ମୋଡ଼ି ଗୁଡ଼ଇ ରଡ଼ି ଶିରକୁ ଝାଡ଼ିକେ
କେ ମାଲି ବନ୍ଧାଣରେ ଯାଉଛି ଗଡ଼ିକେ,
କେ କାହା ଉପରେ ପୁଣି ବସଇ ମାଡ଼ିକେ

କେ ମେଡ଼ା ମୋଡ଼ି କେ ଭିଡ଼ାଭିଡ଼ି କେ ଜଡ଼ାଜଡ଼ି କେ ଛଡ଼ାଛଡ଼ି
କେ ପଡ଼ାପଡ଼ି କେ କୋଡ଼ା କୋଡ଼ି କେ ହୁଡ଼ା ହୁଡ଼ି ଯେ ।"
ଏହିପରି ସ୍ୱଭାବ ସୁନ୍ଦର ବର୍ଣ୍ଣନା କବି ପରିଚ୍ଛାର ପରିଚୟ ଦିଏ ।

ବିରହ କାଳରେ କବିଙ୍କର ଋତୁ ବର୍ଣ୍ଣନା ନାୟକ ନାୟିକାଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ବିଶେଷ ସହାୟକ । ତେଣୁ ବିଭିନ୍ନ ଋତୁରେ ସେମାନଙ୍କର ଅନୁଚିନ୍ତନ ମଧ୍ୟରେ କବିଙ୍କର

ସୌନ୍ଦର୍ଯ୍ୟ ବହୁଭାବରେ ପ୍ରକାଶିତ ହୋଇଥାଏ । କିନ୍ତୁ ଋତୁ ବର୍ଣ୍ଣନାରେ ରୀତିଯୁଗର ଅନ୍ୟାନ୍ୟ କବି ଦୀନକୃଷ୍ଣ କିମ୍ବା ଭଞ୍ଜଙ୍କ ପରି ଯେ ପ୍ରସିଦ୍ଧି ଲାଭକରି ପାରିନାହାନ୍ତି । କିନ୍ତୁ ଅଭିମନ୍ୟୁଙ୍କର ଅଟ୍ଟଳ ଚମତ୍କାର ବର୍ଣ୍ଣନା ଗୁଡ଼ିକ ଏତେ ସୁନ୍ଦର, ସଙ୍ଗୀତ ଓ ସାବଲୀଳ ଭାବରେ ବିଷୟବସ୍ତୁର ସରସତା ପ୍ରତିପାଦିତ କରି ପାରିଛନ୍ତି ଯେ, ସତେ ଯେପରି କବିତାର ମନୋରମ କଳେବର ଭିତରେ ଏକ ଦିବ୍ୟ ଆତ୍ମା ବାସ୍ତବ ରୂପରେ ଅବତୀର୍ଣ୍ଣ ହୋଇ ପଡ଼ିଛି । ଏହି ପ୍ରକୃତି ବର୍ଣ୍ଣନା ଓ ନାୟକ ନାୟିକାଙ୍କର ରୂପବର୍ଣ୍ଣନ ଅତିମାତ୍ରାରେ ହୃଦୟଗ୍ରାହୀ । ଏହି ବର୍ଣ୍ଣନାହିଁ ତାଙ୍କର ରସିକତା ଓ ସୌନ୍ଦର୍ଯ୍ୟ-ବୋଧର ପରିଚାୟକ । ବୈଷ୍ଣବ ଭାବଧାରାକୁ ଅନୁସରଣକରି ଧର୍ମ ଧାରଣା ପ୍ରତି ଲକ୍ଷ୍ୟ ରଖି କବିଙ୍କର ସୌନ୍ଦର୍ଯ୍ୟବୋଧ ଜାଣି ପାରିଲେ ତାହା ଯେ କୌଣସି ବିଦଗ୍ଧ ପାଠକ ନିକଟରେ ସୁସ୍ପଷ୍ଟ ହୋଇ ଉଠିବ ।

## କବିଙ୍କର ଧର୍ମମତ (ଦୀନକୃଷ୍ଣ ଓ ଅଭିମନ୍ୟୁ)

କାହିଁ କେଉଁ ଅନାଦି କାଳରୁ ସନାତନ ହିନ୍ଦୁଧର୍ମ ନିଜର କାୟା ବିସ୍ତାର କରି ଜମ୍ବୁ ଦ୍ୱୀପରେ ତିଷ୍ଠି ଆସିଛି । ବହୁ ଝଡ଼ ଝଞ୍ଜା ବହି ଯାଇଥିଲେ ମଧ୍ୟ ସେ ଅଚଳ ଅଟଳ ହିମାଚଳ ଭଳି ଦଣ୍ଡାୟମାନ ହୋଇ ରହି ଆସିଅଛି । ଏହି ଧର୍ମର ସଂସ୍କାରପାଇଁ କେତେ ମହା ପୁରୁଷ ଜନ୍ମ ଗ୍ରହଣକରି ବିଭିନ୍ନ ଉପଧର୍ମମାନ ସୃଷ୍ଟି କରିଛନ୍ତି । ପୃଥିବୀର ଅନ୍ୟାନ୍ୟ ଧର୍ମ ମଧ୍ୟ ଏ ଭୂମିରେ ଅବହେଳିତ ହୋଇ ନାହିଁ । ବରଂ ସ୍ୱଶକ୍ତି ମଧ୍ୟରେ ତିଷ୍ଠି ରହି ଜ୍ଞାନ ବିତରଣ କରିଛି । ହିନ୍ଦୁ ଧର୍ମ କିନ୍ତୁ ନିଜର ସ୍ୱାତନ୍ତ୍ର୍ୟ ନଷ୍ଟ ନକରି ବହୁ ଶାଖାଧର୍ମ ସୃଷ୍ଟି କରିବାରେ ସାହାଯ୍ୟ କରିଛି । ବୈଷ୍ଣବ ଧର୍ମ ସେହିପରି

ଏକ ଶାଖା ଧର୍ମ, ଯାହାକୁ ଭାରତରେ ବେଦଯୁଗରୁ ନିଜର ବୀଜ ବପନ କରି କ୍ରମେ କ୍ରମେ କାୟାବିସ୍ତାର କରିଛି । ଏହି ବୈଷ୍ଣବ ଧର୍ମ ମଧ୍ୟ ପରଯୁଗରେ ଅନ୍ୟଧର୍ମର ପ୍ରଭାବ ଗ୍ରହଣକରି ଶାଖା'ଉପଶାଖାରେ ପରିଣତ ହୋଇଛି ଓ ବିଭିନ୍ନ ସମ୍ପ୍ରଦାୟରେ ବିଭକ୍ତ ହୋଇଛି । ବୈଷ୍ଣବ ଧର୍ମର ବହୁ ଲକ୍ଷଣ ମଧ୍ୟରୁ ନିମ୍ନ ପାଞ୍ଚଟି ଲକ୍ଷଣ ମୁଖ୍ୟ ବୋଲି ଗ୍ରହଣ କରାଯାଏ । (୧) ସଗୁଣ ଓ ସାକାର ବିଷ୍ଣୁ ଉପାସନା—ସାଂସାରିକ ବନ୍ଧନରେ ଜଡ଼ିତ ଅଜ୍ଞାନ ମାନବ ନିରାକାର ବ୍ରହ୍ମର ଧାରଣାକରି ପାରିବା ସମ୍ଭବ ନୁହେଁ । ତେଣୁ ସେମାନେ ସାକାର ବ୍ରହ୍ମରେ ବିଶ୍ୱାସ କରନ୍ତି । (୨) ବୈଷ୍ଣବମାନେ ମୋକ୍ଷ ବା ମୁକ୍ତିରେ କାମନା କରନ୍ତି ନାହିଁ । ଏମାନେ ମୋକ୍ଷବାଞ୍ଛାକୁ 'କୈତବ' ବା. କପଟାଶ୍ରୟ ବୋଲି କହନ୍ତି । ଧର୍ମ, ଅର୍ଥ, କାମ, ମୋକ୍ଷ, ଏହି ଚତୁର୍ବର୍ଗ ବା ଚତୁରପୁରୁଷାର୍ଥର ଊର୍ଦ୍ଧ୍ୱରେ ଏମାନେ ପଞ୍ଚମ ପୁରୁଷାର୍ଥ ରୂପେ ଭଗବତ ପ୍ରେମ ବା ଶୁଦ୍ଧାଭକ୍ତିକୁ ସ୍ଥାନ ଦିଅନ୍ତି । ଏହାକୁ ମଧୁର ବା ରାଗାନୁଗା ଭକ୍ତି ବୋଲି କହନ୍ତି । (୩) ସ୍ୱକୀୟା ପ୍ରୀତିରେ ସ୍ୱାର୍ଥ ଜଡ଼ିତ ଥିବାରୁ ବୈଷ୍ଣବମାନେ ଭଗବତ ପ୍ରେମରେ ମର୍ଯ୍ୟାଦା ରଖିବାକୁ ଏହାକୁ ମାଧ୍ୟମ ରୂପେ ଗ୍ରହଣ କରନ୍ତି ନାହିଁ । ଏମାନେ ପରକୀୟା ପ୍ରୀତିର ଉପାସକ । ଏଥିରେ ଅନ୍ୟ ସହିତ ପ୍ରେମ ଜନିତ ବ୍ୟାପାରରେ ବାଧା ଥିବାରୁ ତାହା ହୃଦୟକୁ ଅଧିକ ଆକର୍ଷଣ କରେ ଓ ପ୍ରୀତି ସମ୍ପର୍କ ବାଧାପ୍ରାପ୍ତ ହୋଇ ଅଧିକ ଘନୀଭୂତ ହୋଇ ଉଠେ । (୪) ଏହି ଧର୍ମ ମହାନ୍ ମାନବିକ ଉଚ୍ଚ ଆଦର୍ଶ ଉପରେ ପ୍ରତିଷ୍ଠିତ । ପରସ୍ପର ପ୍ରତି ଈର୍ଷା, ବାଦ, ବିସମ୍ବାଦର ପ୍ରଶ୍ନ ଏଠି ଉଠି ନପାରେ । ମନୁଷ୍ୟର ଆଦର୍ଶ ସ୍ଥାନୀୟ ଗୁଣାବଳୀ ଦୟା, ଧର୍ମ, କ୍ଷମା, ନମ୍ରତା ଓ ସହିଷ୍ଣୁତା ପ୍ରଭୃତି ଏମାନଙ୍କର ଆଚରଣୀୟ । (୫) ମାଧୁର୍ଯ୍ୟତମ

ସାଧନ ନିମିତ୍ତ ସେମାନେ ନବବିଧ ଗ୍ରତ ଆଚରଣ କରନ୍ତି । ସେଗୁଡ଼ିକ ହେଲେ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମ ନିବେଦନ ।

ବୈଷ୍ଣବ ଧର୍ମ ଅତି ପ୍ରାଚୀନ । ପ୍ରାଚୀନ ବୈଦିକ ସମାଜରେ ବିଷ୍ଣୁ ପୂଜା ପ୍ରଚଳିତ ଥିଲି । ଋକ୍‌ବେଦରେ ମଧ୍ୟ ଏହାର ପ୍ରମାଣ ଅଛି । ଶ୍ରୀ ଚୈତନ୍ୟ ନବଦ୍ୱୀପରୁ ଶ୍ରୀ କ୍ଷେତ୍ରକୁ ଆଗମନ କରିବା ପୂର୍ବରୁ ଉତ୍କଳରେ ବୈଷ୍ଣବ ଧର୍ମ ପ୍ରଚଳନ ହୋଇ ସାରିଥିଲି । ଉତ୍କଳରେ ପଞ୍ଚସଖା ମୁଖ୍ୟତଃ ଏହି ଧର୍ମ ପ୍ରସାର ଓ ପ୍ରଗ୍ଭର କରିବାରେ ବ୍ରତୀହୋଇ ପଡ଼ିଥିଲେ । ଏହା ପୂର୍ବରୁ ଉତ୍କଳର ନୀଳାଚଳ ଧାମ ବହୁ ଧର୍ମ ଧାରଣାର କ୍ଷେତ୍ର ହୋଇ ସାରିଥିଲି । ଏଠାକୁ ବିଭିନ୍ନ ସମୟରେ ବିଭିନ୍ନ ଧର୍ମଯାଜକ ଆସିବାର ପ୍ରମାଣ ମିଳେ । ଶଙ୍କରାଗ୍ଭର୍ଯ୍ୟ, ରାମାନୁଜ, ଯାଲବେଗ, ନିମ୍ବାର୍କ, ନାନକ, ଶ୍ରୀ ଚୈତନ୍ୟ ଏପରିକି ଖ୍ରୀଷ୍ଟିଆନ ପାଦ୍ରୀମାନେ ଆସି ଏଠାରେ ଧର୍ମ ପ୍ରଗ୍ଭର କରି ଯାଇଛନ୍ତି । ତେଣୁ ଜଗତରନାଥ ଜଗନ୍ନାଥ ସବୁଧର୍ମର ଦେବତା ରୂପେ କଳ୍ପିତ ହୋଇଛନ୍ତି । ଏଥିପାଇଁ ପଞ୍ଚସଖା ମୁଖ୍ୟତଃ ବୈଷ୍ଣବ ହେଲେ ମଧ୍ୟ ଏମାନଙ୍କ ସାହିତ୍ୟରେ ବହୁସାହିତ୍ୟର ସୂଚନା ମିଳେ । କିନ୍ତୁ ଶ୍ରୀ ଚୈତନ୍ୟ ଉତ୍କଳକୁ ଆସିବା ପୂର୍ବରୁ ପଞ୍ଚସଖା ଜ୍ଞାନମିଶ୍ରା ଭକ୍ତିର ଉପାସନା କରୁଥିଲେ । ଶ୍ରୀ ଚୈତନ୍ୟ ଆସିବାପରେ ଉତ୍କଳରେ ବୈଷ୍ଣବ ଧର୍ମ ଦୁଇଟି ସମ୍ପ୍ରଦାୟରେ ବିଭକ୍ତ ହେଲା । ସେମାନେ ହେଲେ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବ । ଗୌଡ଼ଦେଶାଗତ ଶ୍ରୀ ଚୈତନ୍ୟଙ୍କ ଧର୍ମ ଧାରଣାକୁ ଯେଉଁମାନେ ଗ୍ରହଣ କରିନେଲେ ସେମାନେ ଗୌଡ଼ୀୟ ନାମରେ ପରିଚିତ ।

ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବଙ୍କ ମଧ୍ୟରେ ମୁଖ୍ୟ ପାର୍ଥକ୍ୟ ହେଉଛି ଉତ୍କଳୀୟଙ୍କ ମତରେ ଜଗନ୍ନାଥ ହେଉଛନ୍ତି ଅବତାରୀ ଓ କୃଷ୍ଣ ହେଉଛନ୍ତି ଅବତାର । ସେଥିପାଇଁ ଦିବାକର ଦାସ ନିଜ ଜଗନ୍ନାଥ ଚରିତାମୃତ'ରେ ଲେଖିଛନ୍ତି—

"ଜଗନ୍ନାଥ ଯେ ଷୋଳ କଳା । ତହୁଁ କଳାଏ ନନ୍ଦବାଳା
କଳାକୁ କଳା ଏକ କରି । ଗୋପେ ବିହରେ ନରହରି ।"
ପରମବ୍ରହ୍ମ ଜଗନ୍ନାଥ । ଅବତାର ପରେ ସଂସ୍ଥିତ
କୋଟି କୋଟି ଯେ ଅବତାର । ଜଗନ୍ନାଥ ଅଙ୍ଗୁ ବାହାର ।"

(୧) କିନ୍ତୁ ଗୌଡ଼ୀୟ ବୈଷ୍ଣବମାନେ କହନ୍ତି କୃଷ୍ଣ ହେଉଛନ୍ତି ଅବତାରୀ ଓ ଅନ୍ୟମାନେ ଅବତାର । ସେଥିପାଇଁ ସେମାନେ କହନ୍ତି—

"ଏତେ ଚାଂଶ କଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟଂ"

ଅର୍ଥାତ୍ ଭଗବାନ କୃଷ୍ଣ ଶକ୍ତ୍ୟାବତାର ବା ଗୁଣାବତାର ନୁହଁନ୍ତି ।

(୨) ଉତ୍କଳୀୟମାନେ ଜ୍ଞାନମିଶ୍ରା ଭକ୍ତିରେ ବିଶ୍ୱାସ କରନ୍ତି ତେଣୁ ଜ୍ଞାନ ସହିତ ସେମାନଙ୍କର ସମ୍ପର୍କ ଥାଏ ।

(୩) ଉତ୍କଳୀୟ ବୈଷ୍ଣବ ଏକେଶ୍ୱରବାଦୀ ଯୋଗାଶ୍ରୟୀ ବୈଷ୍ଣବ ଓ ଗୌଡ଼ୀୟମାନେ ଦ୍ୱୈତବାଦୀ କୃଷ୍ଣାଭିମୁଖୀ ।

(୪) ଉତ୍କଳୀୟମାନଙ୍କ ମତରେ ପୁରୁଷୋତ୍ତମ କ୍ଷେତ୍ରହିଁ ଆଦ୍ୟ କ୍ଷେତ୍ର । ସେଥିପାଇଁ ଦୀନକୃଷ୍ଣ 'ରସ ବିନୋଦ'ରେ ଲେଖିଛନ୍ତି—

"ନିତ୍ୟ ଯେ ଶ୍ରୀ ପୁରୁଷୋତ୍ତମ । ତହିଁକ କେଉଁ ତୀର୍ଥସମ ।
ନିତ୍ୟ ଯେ ନୀଳଗିରି ପେଣ୍ଠ । ନାମ ଗୁପତ ବଇକୁଣ୍ଠ ।"

କିନ୍ତୁ ଗୌଡ଼ୀୟମାନେ କହନ୍ତି ଯେ ଗୋପ ବା ବୃନ୍ଦାବନ ହେଉଛି ନିତ୍ୟଧାମ । ଯେଉଁଠି ରାଧାକୃଷ୍ଣଙ୍କର ନିତ୍ୟ ରାସଲୀଳା ଲାଗି ରହିଛି ।

(୫) ଉତ୍କଳୀୟ ବୈଷ୍ଣବ ଗୋପୀଭାବରେ ଯେପରି ଗୁରୁତ୍ୱ ଆରୋପ କରନ୍ତି ରାଧା ଭାବରେ ସେତେ ନୁହେଁ । ସେମାନେ ରାଧାଙ୍କୁ ଷୋଳସହସ୍ର ଗୋପୀଙ୍କସହ ସମାନ କରନ୍ତି । କିନ୍ତୁ ଗୌଡ଼ୀୟ ମାନେ ରାଧା ଭାବରେ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ରାଧାଙ୍କୁ ମହାଭାବ ସ୍ୱରୂପିଣୀ ବୋଲି ବିଶ୍ୱାସ କରନ୍ତି ଏବଂ ସେ କୃଷ୍ଣଙ୍କର ହ୍ଲାଦିନୀ ଶକ୍ତିରୁ ପରିପ୍ରକାଶ ଲାଭ କରିଛନ୍ତି ବୋଲି ବିଶ୍ୱାସ କରନ୍ତି ।

(୬) ଉତ୍କଳୀୟମାନେ "ହରେରାମ"କୁ ମହାମନ୍ତ୍ରରୂପେ ଜପ କରନ୍ତି କିନ୍ତୁ ଗୌଡ଼ୀୟ ମାନେ "ହରେକୃଷ୍ଣ" ମହାମନ୍ତ୍ରରେ ଉପାସନା କରନ୍ତି । କିନ୍ତୁ ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ ଯେ, ଉଭୟେ ହରି ଶବ୍ଦଟିକୁ ମୂଳରୂପେ ଗ୍ରହଣ କରିଛନ୍ତି ।

ଉତ୍କଳରେ ଏହି ଦୁଇ ସମ୍ପ୍ରଦାୟର ଭକ୍ତ ଦେଖିବାକୁ ମିଳନ୍ତି । ଏମାନେ ନିଜ ନିଜ ସମ୍ପ୍ରଦାୟର ସଙ୍କୀର୍ଣ୍ଣ ପରିସର ମଧ୍ୟରେ ଏପରି ଭାବରେ ଆବଦ୍ଧ ଯେ ,ଯାହା ଫଳରେ ସେମାନଙ୍କ ମଧ୍ୟରେ ସମୟ ସମୟରେ ସଂଘର୍ଷ ଦେଖା ଦେଇଥାଏ । କିନ୍ତୁ ଯାହାହେଉ ପଛେ ଉତ୍କଳରେ ଏହି ଉଭୟ ଧର୍ମ ଧାରଣାକୁ ବିଶ୍ୱାସ କରି ବହୁ ଭକ୍ତକବି ନିଜର ଭକ୍ତିମାର୍ଗକୁ ରୂପଦେଇ ସାହିତ୍ୟ

ସୃଷ୍ଟି କରି ଯାଇଛନ୍ତି । ଘନକୃଷ୍ଣ ଦାସଙ୍କ "ରସ କଲ୍ଲୋଳ"ରୁ ଓ ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ'ରୁ ଉଭୟ ସମ୍ପ୍ରଦାୟ ସଂଘର୍ଷର ସୂଚନା ମିଳିଥାଏ । ଉତ୍କଳୀୟ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ପଞ୍ଚସଖା ଓ ଘନକୃଷ୍ଣ ପ୍ରଭୃତି ଓ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ଦନାଇଦାସ, ସଦାନନ୍ଦ, କବିସୂର୍ଯ୍ୟ ବ୍ରହ୍ମା, ଅଭିମନ୍ୟୁ, ଭକ୍ତଚରଣ, ଗୋପାଳ କୃଷ୍ଣ ପ୍ରଭୃତି କବି ମୁଖ୍ୟ ଅଟନ୍ତି ।

କଲ୍ଲୋଳ କବି ଘନକୃଷ୍ଣ ବୈଷ୍ଣବ ସୁଲଭ ଗୁଣାବଳୀରେ ଭୂଷିତ ଥିଲେ । ସାଂସାରିକ ଜୀବନରେ ତାହାର ପ୍ରତି ଈର୍ଷା, ହିଂସାଭାବ ପୋଷଣ ନକରି ସେ ଜୀବନ ଅତିବାହିତ କରୁଥିଲେ । "ନମ୍ରନ୍ତି ଗୁଣିନ ଜନା" ଭଳି ସେ ଅତିବିନମ୍ର ଜୀବନ ଯାପନ କରୁଥିଲେ । ସଂସାରର କ୍ରୋଧ, ଅଭିମାନ, ଅହଂଭାବ ଅବଲୋକନରେ କବିମନ ଆକୁଳ ହୋଇ ଉଠିଛି । ତେଣୁ ରସକଲ୍ଲୋଳରେ ମାନବର ମହିମମୟ ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ ଆଗାମୀ ଯୁଗର ସନ୍ତାନମାନଙ୍କୁ ଏକ ବିନମ୍ର ନିବେଦନ ଜଣାଇ ଗାଇଛନ୍ତି—

"କରଧରି କହୁଅଛି ହେ ଜନେ,
କ୍ରୋଧ ଅଭିମାନ ନଧର ମନେ ।
କରୁଣା ହୃଦୟ କରତେ ହୁଅ,
କୃଷ୍ଣ କଥାରେ ଏକା ମନଦିଅ ।
କୋଟିଏ କୋଟି ଜୀବେ ମୁଁ ଏକ,
କେତେ ମୋର ବୁଦ୍ଧି କେତେ ବିବେକ ।"

କୃଷ୍ଣଗତ ପ୍ରାଣ କବିଙ୍କର କି "ତୃଣା ଦପି ସୁନୀଚେନ" ଭାବ ।

•

ରସକଲ୍ଲୋଳ ଓ ଅନ୍ୟାନ୍ୟ କାବ୍ୟରୁ ଜଣାଯାଏ କବି ଦୀନକୃଷ୍ଣ ଉତ୍କଳୀୟ ବୈଷ୍ଣବ ମତାବଲମ୍ବୀ । ସେ ଜ୍ଞାନମିଶ୍ରା ଭକ୍ତିର ସାଧକ । ରସ କଲ୍ଲୋଳର ପ୍ରଥମ ଛାନ୍ଦ ପଦରେ ସେ ପ୍ରଥମେ ନୀଳାଚଳ ନାୟକଙ୍କୁ ଧ୍ୟାନ କରିବାପାଇଁ ସଜ୍ଜନ ମାନଙ୍କୁ ଅନୁରୋଧ କରିଛନ୍ତି । ସେଥିପାଇଁ ସେ ଲେଖିଛନ୍ତି—

"କର ସାଧୁଜନମାନେ ମନକୁ ଏକ ।
କର ଧୀରେ ଧ୍ୟାନ ନୀଳାଚଳ ନାୟକ ।"

ଏଥିରୁ ସେ ଉତ୍କଳୀୟ ବୈଷ୍ଣବ ବୋଲି ସୂଚନା ମିଳିବା ସଙ୍ଗେ ସଙ୍ଗେ ଅନ୍ୟ ସ୍ଥାନରେ ଜ୍ଞାନମିଶ୍ରା ଭକ୍ତିର ଉଦାହରଣମାନ ମଧ୍ୟ ଦେଖିବାକୁ ମିଳେ । ସେ କହିଛନ୍ତି—

"କର୍ଣ୍ଣ ଦେଇ କୃଷ୍ଣ କଥା ସୁଜନେ,
କେବଣ ମନକୁ ଥାପି ସ୍ଥିର ଆସନେ ।

ଭକ୍ତିସହ ଜ୍ଞାନ ଅତି ସୁନ୍ଦରଭାବେ ମିଶ୍ରିତକରି ଜନ ସାଧାରଣରେ ବିତରଣ କରିବା ତାଙ୍କର ଉଦ୍ଦେଶ୍ୟ । ଖାଲି ସେତିକି ନୁହେଁ, ନୀଳାଚଳ ଧାମର ନାମ କମ୍ବୁକଣ୍ଠେଜ୍ଞ ବା ଶଙ୍ଖକ୍ଷେତ୍ର ବୋଲି ବର୍ଣ୍ଣନା କରି ଜଗନ୍ନାଥଙ୍କୁ ସେଥିରେ 'ନାଗର' ରୂପେ ବର୍ଣ୍ଣନା କରିଛନ୍ତି । ରସକଲ୍ଲୋଳର ଚତୁର୍ବିଂଶ ଛାନ୍ଦରେ କବି ଜଗନ୍ନାଥଙ୍କୁ ଜଗତର ନାଥ ରୂପେ ବର୍ଣ୍ଣନାକରି ତାଙ୍କର ପ୍ରଶସ୍ତି ଗାନ କରିଛନ୍ତି । ସେ ଗାଇଛନ୍ତି —

"କୋଟି ବ୍ରହ୍ମାଣ୍ଡରେ ଏମନ୍ତ ଠାକୁର ଥିବାର ଶୁଣିଛ କାହିଁ ?
କଷ୍ଟେ ଲୋକହିଁ ପରମ ପଦହିଁ ଲଭନ୍ତି ଯାହାକୁ ଚାହିଁ ।

ନୀଳା ପର୍ବତରେ ବିଜୟ ସାଥିରେ କରୁଣା ହୃଦୟ ହୋଇ,
କଳୁଷୀ ଲୋକଙ୍କୁ କଳମଷପଙ୍କୁ ଉଦ୍ଧାର କରିବା ପାଇଁ ।”

ଏହି ଭଳି ଏକ ଜଗତ ପ୍ରସିଦ୍ଧ କ୍ଷେତ୍ରରେ ଜୀବନର ଅବଶିଷ୍ଟାଂଶ ଅତିବାହିତ କରି ଚିରନିଦ୍ରା ଲାଭ କରିବାକୁ ଇଚ୍ଛା ପ୍ରକାଶ କରି ବିଫଳ ହୋଇଥିବାରୁ ସେ ଗାଇଛନ୍ତି—

“କରିଥିଲି ଆଶ ସେ କ୍ଷେତ୍ରେ ନିବାସ କରିବାକୁ ଦୀନକୃଷ୍ଣ
କି ଐଶ୍ୱର୍ଯ୍ୟ ଚହିଁ ନ ପାରିଲି ରହି ପ୍ରଭୁ ନୋହିଲେ ସନ୍ତୁଷ୍ଟ ।”

ଏତଦ୍ ବ୍ୟତୀତ ସମଗ୍ର ରସକଲ୍ଲୋଳରେ ଗୋପୀଭାବ ମୁଖ୍ୟ ସ୍ଥାନ ଲାଭ କରିଛି ଓ ରାଧା ଭାବ ତା ତୁଳନାରେ ଅନେକାଂଶରେ ସୀମିତ । ତେଣୁ ଏହି କାବ୍ୟରେ ରାଧାଙ୍କର ପ୍ରାଧାନ୍ୟକୁ କବି ଗ୍ରହଣ କରି ନାହାଁନ୍ତି । ଏହି ସବୁ ମତ ସଂଗ୍ରହ କରି ଅତି ସାହସର ସହିତ କୁହାଯାଇ ପାରେ ଯେ, ଦୀନକୃଷ୍ଣ ଥିଲେ ଉତ୍କଳୀୟ ବୈଷ୍ଣବ ଧର୍ମାବଲମ୍ବୀ ।

କିନ୍ତୁ ଦୀନକୃଷ୍ଣଙ୍କ ଧର୍ମମତ ବିଷୟରେ ଯେପରି ବିଭିନ୍ନ ମତର ଖଣ୍ଡନ ମଣ୍ଡନ ଚାଲିଛି ତାଙ୍କ ସମ୍ପର୍କରେ ଏତିକି କହି ସନ୍ତୁଷ୍ଟ ହୋଇ ରହି ହୁଏନା । ତାଙ୍କ କାବ୍ୟ କବିତାରୁ ଯାହା ଜଣାଯାଏ, ସେଥିରେ ବୈଷ୍ଣବ ଧର୍ମର ଏକ ଉଦାର-ସମନ୍ୱୟ ବାଣୀ । ବୋଧହୁଏ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବମାନଙ୍କ ମଧ୍ୟରେ ସେତେବେଳେ ଯେଉଁ ସଂଘର୍ଷ ଲାଗିଥିଲା ତାହା ଅନୁଭବ କରି ସେ ଅତି ଗଭୀର ଦୁଃଖ ଅନୁଭବ କରିଥିବେ । ସେଥିପାଇଁ ସେ ଉତ୍କଳୀୟ ବୈଷ୍ଣବ ହେଲେ ମଧ୍ୟ ଦୁଇ ମତବାଦର ସମନ୍ୱୟ

ଆନୟନ କରିବାକୁ ଚେଷ୍ଟାବାନ ହୋଇ ଉଠୁଥିବେ । ତେଣୁ ଏହି ଭାବ ତାଙ୍କର କାବ୍ୟ କବିତା ମଧ୍ୟରେ ହିଁ ଛନ୍ଦେ ଛନ୍ଦେ ଫୁଟି ଉଠିଛି । ହୃଦୟରେ ଉଦାରଭାବ ପୋଷଣକରି ସହନଶୀଳ ଭାବ ପ୍ରକାଶ କରିବା ଏକ ଉତ୍କଳୀୟ ପରମ୍ପରା । ସେହି ଦୃଷ୍ଟିରୁ ଉତ୍କଳର ବଡ଼ ଠାକୁର ଶରଣ ପଞ୍ଜର ଭକ୍ତବତ୍ସଳ ଦେବ ଦେବ ଜଗନ୍ନାଥ ଏହି ସମନ୍ୱୟର ଏକ ମୂର୍ତ୍ତିମନ୍ତ ଅବତାର । ଏହି ନୀଳାଚଳ କ୍ଷେତ୍ରରେ ବହୁ ଧର୍ମର ଲୀଳା ଖେଳା ଲାଗି ଯାଇଛି । ବହୁ ଧର୍ମର ସ୍ରଷ୍ଟା ଓ ପ୍ରଚାରକ ଜଗନ୍ନାଥଙ୍କୁ ନିଜର ଦେବତା ବୋଲି କଳ୍ପନା କରି ଯାଇଛନ୍ତି । ଯେଉଁ ଶ୍ରୀ କ୍ଷେତ୍ରରେ ଏହିପରି ଏକ ଆଦର୍ଶ ଯୁଗ ଯୁଗ ଧରି କାର୍ଯ୍ୟ କରି ଆସିଛି, ସେହି ଶ୍ରୀକ୍ଷେତ୍ର ନାଥଙ୍କୁ ଧ୍ୟାନ ଧାରଣା ତଥା ଇଷ୍ଟଦେବ ବୋଲି ଗ୍ରହଣକରି ସେ ସମନ୍ୱୟବାଦୀ ନହୁଅନ୍ତେ କିପରି ? ସେଥିପାଇଁ ଦୀନକୃଷ୍ଣ ରସକଲ୍ଲୋଳ ଓ ଅନ୍ୟାନ୍ୟ କାବ୍ୟରେ ଜଗନ୍ନାଥ ଓ କୃଷ୍ଣ ଉଭୟଙ୍କର ପ୍ରଶସ୍ତି କରିବା ସଙ୍ଗେ ସଙ୍ଗେ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ କରିଛନ୍ତି । ଏହା ରସକଲ୍ଲୋଳ ପ୍ରଥମ ଛାନ୍ଦରୁ ମିଳିଥିଲା ହୁଏ । ରସକଲ୍ଲୋଳର ପ୍ରଥମ ଛାନ୍ଦ ପ୍ରଥମ ପଦରେ ଜଗନ୍ନାଥ ଓ ଶେଷ ପଦରେ କୃଷ୍ଣଙ୍କୁ କବି ସ୍ମରଣ କରିଛନ୍ତି—

ପ୍ରଥମ ପଦ—କର ସାଧୁଜନମାନେ ମନକୁ ଏକ ।
କର ଧୀରେ ଧ୍ୟାନ ନୀଳାଚଳନାୟକ ।"

ଶେଷ ପଦ—କର ଆଜ୍ଞା ସୁର-ସୁର ପ୍ରଭୁ ଏନକ ।
କହୁ ଦୀନକୃଷ୍ଣ କୃଷ୍ଣ କଥା ଅନେକ ।"

ଏହାବ୍ୟତୀତ ସମନ୍ୱୟର ଅନ୍ୟାନ୍ୟ ଲକ୍ଷଣମାନ ତାଙ୍କ କାବ୍ୟରେ ପରିଲକ୍ଷିତ ହୁଏ । ସେ ଜ୍ଞାନମିଶ୍ରା ଭକ୍ତିର ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ଶୁଦ୍ଧା ଭକ୍ତିର ବହୁଳ ବର୍ଣ୍ଣନା ମଧ୍ୟ ଦେଇଛନ୍ତି । ଜଗନ୍ନାଥ ଓ କୃଷ୍ଣ ଅଭିନ୍ନ ମନେକରି ଉଭୟଙ୍କର ପ୍ରଶସ୍ତି ଗାନ କରିଛନ୍ତି । ଗୋପୀଭାବ ଓ ରାଧାଭାବର ବର୍ଣ୍ଣନା କରିଛନ୍ତି । କିନ୍ତୁ ଯାହାହେଲେ ମଧ୍ୟ ପାନକୃଷ୍ଣଙ୍କ ଭଳି ସ୍ରଷ୍ଟା ଓ ତାଙ୍କର ସୃଷ୍ଟି ଉଭୟ ଧର୍ମାନ୍ଧ ମାନଙ୍କ ଦ୍ୱାରା ଆବୃତ ହୋଇ ପାରି ନାହିଁ । ତେଣୁ ରସକଲ୍ଲୋଳରେ ସେ ଗର୍ଭିର କ୍ଷୋଭର ସହ କହିଛନ୍ତି—

"କୃଷ୍ଣ ଆଶ୍ରେକରି ସୁବଦ୍ୟା ଆଚରି ପାଷାଣ୍ଡକୁ ଯାହା ସ୍ତୁତି,
କୃଷ୍ଣ ଦାସ କହେ କିଛୁ ଭଲ ନୋହେ କେବଳ ଗ୍ଲାନିକୁ କାନ୍ତି ।"

ଅଭିମନ୍ୟୁ ସାମନ୍ତ ସିଂହାରଙ୍କ କାବ୍ୟ ଆଲୋଚନା କଲେ ସେ ଜଣେ ଗୌଡ଼ୀୟ ବୈଷ୍ଣବ ଥିଲେ ଏହା ନିଃସନ୍ଦେହରେ କୁହାଯାଇପାରେ । ତାଙ୍କର ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବି ଜଣେ ପ୍ରସିଦ୍ଧ ଗୌଡ଼ୀୟ ଭକ୍ତ । ତେଣୁ ଶିଷ୍ୟ ଅଭିମନ୍ୟୁ ଗୁରୁଙ୍କର ଆଦର୍ଶରେ ଅନେକାଂଶରେ ଅନୁପ୍ରାଣିତ ହୋଇଥିଲେ । ତେଣୁ ଅଭିମନ୍ୟୁ ଗୌଡ଼ୀୟ ବୈଷ୍ଣବ ଗୁଣାବଳୀ ଯଥା ଦୟା,କ୍ଷମା,ନମ୍ରତା, ବିନୟ ପ୍ରଭୃତି ଗୁଣରେ ଭୂଷିତ ଥିଲେ । ଗୌଡ଼ୀୟ ପରମ୍ପରା ରକ୍ଷାକରି ସ୍ୱକାବ୍ୟ ବିଦଗ୍ଧ ଚିନ୍ତାମଣିରେ—ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧାହରି'ଙ୍କର ମହିମା ଗାନ କରିଛନ୍ତି । ଏତଦ୍ ବ୍ୟତୀତ ପାନକୃଷ୍ଣଙ୍କ ଭଳି ଜଗନ୍ନାଥ କିମ୍ବା ଶ୍ରୀକ୍ଷେତ୍ରର ମହିମା ତାଙ୍କ କାବ୍ୟରେ ଦେଖିବାକୁ ମିଳେନା । କେବଳ ରାଧାଭାବର ମହତ୍ତ୍ୱ

ସମଗ୍ର କାବ୍ୟରେ ମୁଖ୍ୟ ଅଂଶ ଗ୍ରହଣ କରିଛି । ତେଣୁ ମାଧୁର୍ଯ୍ୟ ରସର ଉପାସକ କବି ଗାଇଛନ୍ତି—

"ଏମନ୍ତ ମହିମାବନ୍ତ ପ୍ରେମ ଭକ୍ତିରସ
ଏକ ନିଷ୍ଠେ ଅଭିମନ୍ୟୁ କବିକରେ ଆଶ ।"

ଏଥିରୁ ସ୍ପଷ୍ଟ ସୂଚୀତ ହୁଏ, କବି ମଧୁର ଭକ୍ତି ବା ପ୍ରୀତିର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ।

ବିଦଗ୍ଧ ଚିନ୍ତାମଣି ୯୭ ଛାନ୍ଦରେ କବି ଅଭିମନ୍ୟୁ ବୃନ୍ଦାବନର ମହତ୍ତ୍ୱ ବର୍ଣ୍ଣନା କରିଛନ୍ତି । ସେଥିରେ ସେ ଲେଖିଛନ୍ତି—

"ଦିବ୍ୟ ବୃନ୍ଦାବନ ଆଣି                କେ କହିବ ପରିମାଣି
ବିଶେଷେ ଯହିଁରେ ତରୁ ସନ୍ତାନ ସମ
ଯହିଁ ଭୂମି ଚିନ୍ତାମଣି                କାମ ଧେନୁ ଧେନୁ ଶ୍ରେଣୀ
ଗୋପାଳ ଯହିଁ ଅଖିଳ ନିଧାନ ଶ୍ୟାମ
ଯେଉଁ ସ୍ଥାନ ଧୂଳି ଲଭିନେ
ଗୁଳ୍ମ ହେବାକୁ ବିଧାତା ଭାବନ୍ତି ମନେ ।"

ସର୍ବୋପରି ବୃନ୍ଦାବଣ ଓ ଅନ୍ୟାନ୍ୟ ଗୋପୀଙ୍କ ଉର୍ଦ୍ଧ୍ୱରେ ସେ ରାଧାଙ୍କ ଉଚ୍ଚ ଆସନ ସ୍ୱ କାବ୍ୟରେ ନିର୍ଦ୍ଦିଷ୍ଟ କରିଛନ୍ତି । ତେଣୁ କବି ଲେଖିଛନ୍ତି—

"ତହିଁ ମଧ୍ୟେ ରାସସ୍ଥଳୀ                ଯୋଗମାୟା ବଳେ ଝଳି
ଲୀଳାଚନ୍ଦ୍ର ସମ୍ପାଦନେ ସେ ଅଧିକାରୀ

ବ୍ୟକ୍ତ ଅଂଶ ବୃନ୍ଦାଦେବୀ ତାଙ୍କ ଆଜ୍ଞା ଯେନ ସେବ
ରହିଛନ୍ତି ନିତ୍ୟଦେବୀଙ୍କି ଆଦିକରି ।"

ଶ୍ରୀରାଧାଙ୍କ ରୂପ ଓ ଶ୍ରୀକୃଷ୍ଣଙ୍କ ପ୍ରୀତିପ୍ରେମ—ପ୍ରଣୟାଦି ବର୍ଣ୍ଣନା ବିଦଗ୍ଧ ଚିନ୍ତାମଣିରେ ମୁଖ୍ୟସ୍ଥାନ ଲାଭ କରିଛି । କବି ଅଭିମନ୍ୟୁ ନିଜ ମୁଖରେ ସ୍ୱୀକାର କରିଛନ୍ତି—

"ଘେନି ଅଭିମନ୍ୟୁ ଜୀବ, ରାଧା ଭାବ ଭାବି ଯିବ,
ମତେ ଏ ଭାଗ୍ୟେ କି ଦେଖା ଯିବ ।"

ଗୌଡ଼ୀୟମାନେ ପରଂବ୍ରହ୍ମ ବା ପୁରୁଷ ଅର୍ଥରେ କୃଷ୍ଣଙ୍କ ଓ ଅବଶିଷ୍ଟ ପ୍ରକୃତିକୁ ରାଧା ଅର୍ଥରେ ଗ୍ରହଣ କରନ୍ତି । ତେଣୁ

"ସମାର୍ଦ୍ଧାଂଶ ସ୍ୱରୂପା ତ୍ୱଂ ମୂଳ ପ୍ରକୃତି ରୂପିଣୀ ।"
( ବ୍ରହ୍ମବୈବର୍ତ୍ତ ପୁରାଣ )

ସମସ୍ତ ଗୌଡ଼ୀୟ ସମ୍ପ୍ରଦାୟ ଏହି ରାଧାବାଦକୁ ଗ୍ରହଣ କରିଛନ୍ତି । କିନ୍ତୁ ଦୀନକୃଷ୍ଣ ଉଭୟ ଓଡ଼ିଶୀ ଓ ଗୌଡ଼ୀୟ ମତର ସମନ୍ୱୟ କରି ଆଗେ ଗୋପୀ କୃଷ୍ଣ ଓ ପରେ ରାଧା କୃଷ୍ଣଙ୍କର ବର୍ଣ୍ଣନା କରିଛନ୍ତି । କିନ୍ତୁ ବିଦଗ୍ଧ କବି ଅଭିମନ୍ୟୁ ତାଙ୍କର ସମଗ୍ର କାବ୍ୟରେ ମାତ୍ର ରାଧାକୃଷ୍ଣଙ୍କ ମହିମା ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଛନ୍ତି ।

ଏପରି ଆଲୋଚନା ପରେ କବି ଅଭିମନ୍ୟୁ ଯେ ଗୌଡ଼ୀୟ ବୈଷ୍ଣବ ଏହା ନିଃସନ୍ଦେହରେ କୁହାଯାଇପାରେ ଓ ଉତ୍କଳରେ ବୈଷ୍ଣବ ଧର୍ମର ପ୍ରଚାର ପ୍ରସାର ପାଇଁ ବିଦଗ୍ଧ ଚିନ୍ତାମଣିର ଦାନ କମ୍ ନୁହେଁ; ଏହା ମଧ୍ୟ ସ୍ୱୀକାର କରାଯାଇ ପାରେ ।

# ଅନୁସରଣ ଓ ପ୍ରଭାବ

"ଅପାରେ କାବ୍ୟ ସଂସାରେ କବି ରେବଃ ପ୍ରଜାପତିଃ
ଯଥାସ୍ମୈ ରୋଚତେ ବିଶ୍ୱଂ ତଥା ବିପରିବର୍ତ୍ତତେ (ଧ୍ୱନ୍ୟାଲୋକ)

ସର୍ବଂସହା ଧରିତ୍ରିକୋଳରେ କବି ପ୍ରଜାପତିର ଭୂମିକା ଗ୍ରହଣ କରିଥାଏ । ଫୁଲରୁ ଫୁଲକୁ ଉଡ଼ି ସେ ମଧୁପାନ କଲାଭଳି କବି ପୂର୍ବବର୍ତ୍ତୀ କବିମାନଙ୍କ କାବ୍ୟ କୁସୁମରୁ ଭାବମଧୁ ଗ୍ରହଣ କରି ସ୍ୱକାବ୍ୟ ରଚନା କରେ । ଏହା ପୃଥିବୀର ସବୁ ସାହିତ୍ୟରେ ପରିଲକ୍ଷିତ ହୁଏ । ଗୋଟିଏ କବିର କଳ୍ପନାକୁ ଯିଏ ଯେଉଁ ଭାବ ଆଲୋଡ଼ିତ କରିଥାଏ ତାହା ଯେ ଅନ୍ୟ କବି ମନରେ ଅନ୍ୟ ଯୁଗରେ ପ୍ରତିଭାତ ନହୁଏ ତାହା କହି ହେବନି । ଯୋଗଜନ୍ମା କବିର ସୁଦୂର ପ୍ରସାରୀ ପ୍ରଭାବ ବହୁ କବିଙ୍କୁ ଆକୃଷ୍ଟ କରିଥାଏ । ଏହି ଦୃଷ୍ଟିରୁ ବିଚାର କରି ବସିଲେ ମହାକବି କାଳିଦାସ, ଶ୍ରୀହର୍ଷ, ମାଘ, ଭାରବୀ ପ୍ରଭୃତି ପ୍ରାଚ୍ୟ କବି ଓ ସେକ୍ସପିଅର, ମିଲ୍‌ଟନ୍, ପୋପ୍, ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ପ୍ରଭୃତି ପାଶ୍ଚାତ୍ୟ କବି ମଧ୍ୟ ଏ ଦୋଷରୁ ମୁକ୍ତ ନୁହନ୍ତି । ଏଣୁ କାଳିଦାସ ଅଶ୍ୱଘୋଷଙ୍କ ନିକଟରେ ଋଣୀ ଓ ସେକ୍ସପିଅର୍ ଗ୍ରୀକ୍ ସାହିତ୍ୟ ନିକଟରେ ଋଣୀ । ସେହି ଦୃଷ୍ଟିରୁ ବିଚାରକଲେ ଓଡ଼ିଆ ରୀତିଯୁଗ କବି ଦୀନକୃଷ୍ଣ ଓ ଅଭିମନ୍ୟୁ ତାଙ୍କ ପୂର୍ବବର୍ତ୍ତୀ କବିମାନଙ୍କ ନିକଟରେ ଅନେକାଂଶରେ ଋଣୀ ଓ ଏମାନଙ୍କ ନିକଟରେ ତାଙ୍କର ଉତ୍ତର ପୁରୁଷମାନେ ବି ବହୁଭାବରେ ଋଣୀ । ଫଳରେ ଓଡ଼ିଆ ସାହିତ୍ୟର ବିଶେଷ କ୍ଷତି ନହୋଇ ବରଂ ଉନ୍ନତି ହୋଇଛି ।

ରସକଲ୍ଲୋଳ ପ୍ରଣେତା ଭକ୍ତକବି ଦୀନକୃଷ୍ଣ ଜଣେ ପ୍ରତିଭା ସମ୍ପନ୍ନ କବି ଥିଲେ । ସେ ସଂସ୍କୃତ, ଓଡ଼ିଆ, ବଙ୍ଗଳାରେ ରଚିତ ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ କରିଥିଲେ ମନେହୁଏ । କବି ଦୀନକୃଷ୍ଣଙ୍କ ପୂର୍ବରୁ କବି କାର୍ତ୍ତିକ ଦାସ, ଅର୍ଜ୍ଜୁନ, ଶିଶୁଶଙ୍କର, ରଘୁନାଥ, ଧନଞ୍ଜୟ ପ୍ରଭୃତି କବି ଜନ୍ମଗ୍ରହଣ କରି ଓଡ଼ିଆ କାବ୍ୟ ଯୁଗର ଏକ ଭିତ୍ତିପତ୍ତନ କରି ଯାଇଥିଲେ । ଫଳରେ ଦୀନକୃଷ୍ଣ ସେହି କାବ୍ୟ ମାର୍ଗକୁ ହିଁ ଅନୁକରଣ ତଥା ଅନୁସରଣ କଲେ । ପୂର୍ବବର୍ତ୍ତୀ କବିମାନଙ୍କର ପ୍ରଭାବ ତେଣୁ ସେ ଏଡ଼ାଇ ପାରିଲେ ନାହିଁ । ସେ କହିଛନ୍ତି—"କବିଭି କୋଷେ ନାନା ଦ୍ରବ୍ୟ ଥାଇ ।" ଏହି ନାନା ଦ୍ରବ୍ୟ କବି ଅନ୍ୟ ମାନଙ୍କଠାରୁ ତିଳତିଳ ଆହରଣ କରି ତିଲୋତ୍ତମା କାବ୍ୟ ସୁନ୍ଦରୀ ସୃଷ୍ଟି କରିଛନ୍ତି । କବି ଦୀନକୃଷ୍ଣ ବିଶେଷକରି କଲ୍ଲୋଳ କବି ଜୟଦେବଙ୍କ ନିକଟରେ ଅନେକାଂଶରେ ଋଣୀ । ତାଙ୍କ ରଚିତ ଗୀତ ଗୋବିନ୍ଦର ପ୍ରଭାବ ରସ କଲ୍ଲୋଳରେ ଅନେକ ପରିମାଣରେ ପରିଦୃଷ୍ଟ ହୁଏ । କବିମାନେ ପରସ୍ପର ଦ୍ୱାରା କିପରି ପ୍ରଭାବିତ ହୁଅନ୍ତି ତାହା ଗୋଟିଏ ଉଦାହରଣରୁ ବେଶ ପରିଷ୍କାର ହୋଇଯିବ । କବି ଦୀନକୃଷ୍ଣଙ୍କ ଉପରେ ଜୟଦେବଙ୍କ ଯେଉଁ ପ୍ରଭାବ ପଡ଼ିଛି ସେହି ଜୟଦେବ କିପରି ଅନ୍ୟମାନଙ୍କ ନିକଟରେ ଋଣୀ ତାହା ଲକ୍ଷ୍ୟ କରିବାର କଥା । ଜୟଦେବଙ୍କର ଗୀତ ଗୋବିନ୍ଦର ପ୍ରଥମ ଶ୍ଲୋକ—

"ମେଘୈର୍ମେଦୁରମମ୍ବରଃ
ବନଭୂବଃ ଶ୍ୟାମାସ୍ତମାଲ ଦ୍ରୁମୈ
ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂରାଧେ ଗୃହଂ ପ୍ରାପୟ
ଇତ୍ଥଂ ନନ୍ଦନ ଦେଶତ ଶ୍ଚଳିତୟୋଃ",

ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରଭାବ ଏହା ଉପରେ କିପରି ପଡ଼ିଛି ତାହା ଲକ୍ଷ୍ୟ କରିବାର କଥା ।

"ମେଘାବୃତ୍ତଂ ନଭୋବୃଷ୍ଟ୍ୱା ଶ୍ୟାମଲଂ କାନନାନ୍ତରଂ
ଝଂଜାବାତଂ ମେଘଶବ୍ଦ ବଜ୍ର ଶବ୍ଦଂଚଦା ରୁଣଂ,
ଏବଂ ନନ୍ଦେ ପ୍ରବଦନ୍ତି ରୁଦ୍ରୋଦ ଶ୍ରୀହରସ୍ତଦା
ମାୟୂାଭୟା ଭୟେଭ୍ୟଶ୍ଚ ପିତୁଃ କଣ୍ଠ ଦଧାରସ
ଏତସ୍ମିନ୍ନନ୍ତରେ ରାଧାଜଗାମ କୃଷ୍ଣ ସନ୍ନିଧିମଂ ।"
( ଶ୍ରୀକୃଷ୍ଣ ଜନ୍ମ ଖଣ୍ଡ, ୧୫ ଅଧ୍ୟାୟ )

କବି ଧନକୃଷ୍ଣ ମଧ୍ୟ 'ଭକ୍ତି ରସାମୃତ ସିନ୍ଧୁ'ର ବିବିଧରସ ଚର୍ଚ୍ଚାର ଚମତ୍କାର ତାତ୍ତ୍ୱିକ ଆଲୋଚନା ପ୍ରତି ଆକୃଷ୍ଟ ହୋଇ ରସକଲ୍ଲୋଳରେ ଶୃଙ୍ଗାର ରସ ସହ ବିବିଧ ରସର ପରିବେଷଣ କରିଛନ୍ତି । ଅନ୍ୟାନ୍ୟ ରସର ସମାବେଶ ରସକଲ୍ଲୋଳରେ କରାଯାଇଥିଲେ ମଧ୍ୟ ତାହାର ମୁଖ୍ୟରସ ଶୃଙ୍ଗାର । ଏଥିପାଇଁ କାବ୍ୟର ନାମ 'ରସକଲ୍ଲୋଳ' ବୋଧହୁଏ ରଖିଛନ୍ତି । ଅଶେଷ ରସର ସମାବେଶ ହୋଇ ଥିବାରୁ କବି କହିଛନ୍ତି—

"କେତେ କଉତୁକ ଅଛଇ ଏଥି,
କେବଳ କ୍ଷୀର ସିନ୍ଧୁପ୍ରାୟେ ମନ୍ଥି
କର ରସ ଜାତ, କରି ଧୀଷଣା ମନ୍ଦର ପର୍ବତ ।"

ରସକଲ୍ଲୋଳର କାନ୍ତ କୋମଳ ପଦାବଳୀରୁ ଅନୁମିତ ହୁଏ ଯେ, ଗୀତ ଗୋବିନ୍ଦର ପ୍ରଭାବ ଏହା ଉପରେ ଯଥେଷ୍ଟ ବେଶୀ । ତା'ହୋଇ ନଥିଲେ ରୀତିଯୁଗର ଅନ୍ୟାନ୍ୟ କାବ୍ୟ

ଗୁଡ଼ିକ ଯେପରି ନିଗୂଢ଼ ଭାଷା ବନ୍ଧନୀ ମଧ୍ୟରେ ଲିଖିତ ରସକଲ୍ଲୋଳ ହୁଏତ ଠିକ୍ ସେହି ରୂପ ଧାରଣ କରିଥାନ୍ତା । ସେ ଆଜି ମଳୟ ପବନମନ୍ଦହୋଇ ରସିକ ଚିତ୍ତକୁ ପଲ୍ଲବିତ କରୁନଥାନ୍ତା । ରସକଲ୍ଲୋଳର ବିଭିନ୍ନ ସ୍ଥାନରେ ଯେଉଁ ରାସକେଳିର ବର୍ଣ୍ଣନା ଦିଆଯାଇଛି ଗୀତ ଗୋବିନ୍ଦର କେଳି ବର୍ଣ୍ଣନାର ପ୍ରଭାବ ଏଥିରେ ସ୍ପଷ୍ଟ ।

କବି ଦୀନକୃଷ୍ଣ ଓଡ଼ିଆ ଭାଗବତ ରଚୟିତା ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ମନେହୁଏ । ଭାଗବତର ଦଶମ ଓ ଏକାଦଶ ସ୍କନ୍ଧର ପ୍ରଭାବ ରସକଲ୍ଲୋଳରେ ପରିଲକ୍ଷିତ ହୁଏ । ରସକଲ୍ଲୋଳର ବିଂଶଛାନ୍ଦରେ ଜନୈକା ଗୋପୀଙ୍କୁ ଶ୍ରୀକୃଷ୍ଣ ସଙ୍ଗରେ ଧରି ବନବିହାର କରିବା ସମୟରେ ସ୍କନ୍ଧରେ ଧାରଣା କରିବା ଘଟଣା ଓଡ଼ିଆ ଭାଗବତର ଅନୁରୂପ । କବି ରସକଲ୍ଲୋଳରେ ଲେଖିଛନ୍ତି, ଯେତେବେଳେ ଗୋପୀ କ୍ଳାନ୍ତହୋଇ କହିଛି—

"କେମନ୍ତହୋଇ ଯିବି ନଚଳେ ପାଦ",
ସେତେବେଳେ କୃଷ୍ଣ ହସି କହନ୍ତି ନକର ଖେଦ ଗୋ,
କଳକଣ୍ଠ ବଚନି କୁନ୍ଦଦଶନି,
କନ୍ଧେ ମୋହର ବସ ମନ ମୋହିନି ଗୋ
ଏମନ୍ତ କନ୍ଧେ ବସାଇ ଧୀରେ,
ଜଙ୍ଗର ପ୍ରାପ୍ତ ହେଲେ ମଦନଭରେ ଯେ ।"

ପୁଣି ସପ୍ତଦଶ ଛାନ୍ଦରେ ଶ୍ରୀକୃଷ୍ଣ ଦର୍ଶନରେ ଗୋପିମାନଙ୍କର ବିଭ୍ରମ ବର୍ଣ୍ଣନା ସହିତ କବି ବଳରାମ ଦାସଙ୍କ ଦାଣ୍ଡି

ରାମାୟଣସ୍ଥ ରାମଚନ୍ଦ୍ରଙ୍କ ଦର୍ଶନରେ ମିଥିଳା ନାରୀ ମାନଙ୍କର ବଭ୍ରମ ବର୍ଣ୍ଣନାର ସାମ୍ୟ ପରିଲକ୍ଷିତ ହୁଏ । ଏତଦ୍‌ବ୍ୟତୀତ କବି ଚଣ୍ଡିଦାସ, ବିଦ୍ୟାପତି ଙ୍କ ବୈଷ୍ଣବ ପଦାବଳୀ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ ମନେହୁଏ ।

ରସ କଲ୍ଲୋଳରୁ ଜଣାଯାଏ, ଦୀନକୃଷ୍ଣ ଜଣେ ପ୍ରତିଭା ସମ୍ପନ୍ନ କବିଥିଲେ । କିନ୍ତୁ ତାଙ୍କ ଲେଖାରୁ ଜଣାଯାଏ ସେତେବେଳେ ତାଙ୍କ କାବ୍ୟ କବିତା ବିଶେଷ ଆଦୃତ ହୋଇପାରି ନଥିଲା । ତେଣୁ ପରବର୍ତ୍ତୀ କବି ମାନଙ୍କୁ ତାଙ୍କ ସାହିତ୍ୟ ପ୍ରଭାବିତ କରି ପାରିଲା ନାହିଁ ବୋଲି ଭାବି ଦୀନକୃଷ୍ଣ ଅତି ନୈରାଶ୍ୟ ଜର୍ଜ୍ଜରିତ ଚିତ୍ତରେ ଲେଖିଛନ୍ତି—

"କଲିଯେ ଭୁମିନାମ କୁସୁମ ଯତନ କରି ମାଳା ସୁଷମ,
ତାହା ମୂଲ୍ୟର ନେବାକୁ କେହି ନୋହିଲେ କ୍ଷମ ହେ ।"

ଅର୍ଥାତ ଜଗନ୍ନାଥଙ୍କୁ ଅତି ଦୁଃଖ ଚିତ୍ତରେ ସେ ନିଜର ମନୋଭାବ ଜଣାଇଛନ୍ତି । କିନ୍ତୁ ଏହା ସତ୍ୟ ବୋଲି ପ୍ରତୀୟମାନ ହୁଏନା । କାରଣ ଏହା ଯଦି ସତ୍ୟ ହୋଇଥାନ୍ତା ବା ଦୀନକୃଷ୍ଣଙ୍କର ପ୍ରତିଭା ଯଦି ଅନ୍ୟଙ୍କୁ ପ୍ରଭାବିତ କରିପାରି ନଥାନ୍ତା, ତାହାହେଲେ ପ୍ରକୃତ ସାହିତ୍ୟର ସମ୍ରାଟ କବି କଞ୍ଜି ଭଞ୍ଜ ତାଙ୍କ ପଦରେ ମଧାନତ କରି ନଥାନ୍ତେ । ତାଙ୍କର ମହତ୍ତ୍ୱକୁ ଉପଲବ୍‌ଧି କରିଥିଲେ ବୋଲି କବିଗୁରୁ ଉପେନ୍ଦ୍ର କହିଛନ୍ତି "ଦୀନକୃଷ୍ଣ ଜୟଦେବ ପାଦେ ମୋର ଶରଣ ।" ଏଥିରୁ ଦୀନକୃଷ୍ଣଙ୍କ ପ୍ରତି ଭଞ୍ଜଙ୍କର ଧାରଣା ସହଜରେ ଅନୁମେୟ । ତେଣୁ ଏହା ସ୍ୱୀକାର୍ଯ୍ୟ ଯେ ଦୀନକୃଷ୍ଣ ତାଙ୍କର ପରବର୍ତ୍ତୀ ତଥା ସମସାମୟିକ କବିମାନଙ୍କୁ ନିଜର ସାହିତ୍ୟ ଦ୍ୱାରା ପ୍ରଭାବିତ

କରିପାରିଥିଲେ । ହୁଏତ ଏହା ହୋଇପାରେ, ଉତ୍କଳୀୟ କିମ୍ବା ଗୌଡ଼ୀୟ ବୈଷ୍ଣବମାନଙ୍କ ଦ୍ୱାରା ସେ ସମାଦୃତ ହୋଇ ପାରି ନଥିବେ । କାରଣ ସେ କୌଣସି ସଂପ୍ରଦାୟର ନହୋଇ କେବଳ ବୈଷ୍ଣବ ଧର୍ମର ଉପାସକ ଥିଲେ । ତେଣୁ ସେ ଓଡ଼ିଶୀ କିମ୍ବା ଗୌଡ଼ୀୟଙ୍କ ବିଶ୍ୱାସ ଭାଜନ ହୋଇପାରି ନଥିବେ । ଫଳରେ ଏମାନଙ୍କ ଦ୍ୱାରା ତାଙ୍କ ସାହିତ୍ୟ ଅନାଦୃତ ହୋଇଥିବ । ତା'ନହେଲେ ସାଧାରଣରେ ତାଙ୍କର କାବ୍ୟ କବିତା ଅନାଦୃତ ହେବାର କୌଣସି କାରଣ ନାହିଁ । ତେଣୁ ଓଡ଼ିଆ ସାହିତ୍ୟର ରୀତିଯୁଗର ଅଗ୍ରଦୂତରୂପେ କବି ଦୀନକୃଷ୍ଣଙ୍କୁ ଗ୍ରହଣ କରାଯାଇ ପାରେ । କାବ୍ୟ ସାହିତ୍ୟର ସହୃଦୟ ରସଜ୍ଞ ପାଠକ ନିକଟରେ ରସକଲ୍ଲୋଳର ମୂଲ୍ୟଥିଲା ଅକଳନୀୟ । ସେଥିଯୋଗୁ ପରକାଳରେ ବହୁ ପ୍ରତିଭାବାନ କବି ରସକଲ୍ଲୋଳ ଦ୍ୱାରା ପ୍ରଭାବିତ ହେଲା ଭଳି ମନେ ହୁଏ । ରୀତିଯୁଗ ଶୈଳୀର ଗଣ୍ଡି ମଧ୍ୟରେ ଆବଦ୍ଧ ରହି ରାଧାକୃଷ୍ଣ ପ୍ରେମକୁ ସମ୍ବଳ କରି କାବ୍ୟ ସୃଷ୍ଟି କରିବା ପ୍ରଥମେ ସମ୍ଭବ ହୋଇଥିଲା କେବଳ ଦୀନକୃଷ୍ଣଙ୍କ ଠାରେ । ଏହାଙ୍କ ପରେ ଭୂପତି ପଣ୍ଡିତ, ଅଭିମନ୍ୟୁ, ଭକ୍ତଚରଣ ପ୍ରଭୃତି କବି ତାଙ୍କରି ପଥ ଅନୁସରଣ କରି ଲେଖିଲେ—ଯଥାକ୍ରମେ 'ପ୍ରେମ ପଞ୍ଚାମୃତ, ବିଦଗ୍ଧ ଚିନ୍ତାମଣି, ମଥୁରା ମଙ୍ଗଳ ।" ଧର୍ମଗତ ଭେଦଭାବକୁ ବାଦଦେଲେ ଏହି କାବ୍ୟ ଗୁଡ଼ିକରେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା ବର୍ଣ୍ଣନା ରସକଲ୍ଲୋଳର ଅନୁରୂପ ବର୍ଣ୍ଣନା ଦ୍ୱାରା ପ୍ରଭାବିତ ହୋଇଛି । ରାଧାକୃଷ୍ଣ ତଥା ଗୋପୀଙ୍କ ରୂପ ବର୍ଣ୍ଣନ, କୃଷ୍ଣଙ୍କ ସହିତ ରାସ ରଚନା ରସ କଲ୍ଲୋଳରେ ଯେପରି ସାବଲୀଳ ଭଙ୍ଗୀ ଓ ସୁମଧୁର ଛନ୍ଦରେ କରାଯାଇଛି ଉପରୋକ୍ତ କାବ୍ୟ ମାନଙ୍କରେ ତାହାର ପ୍ରତିଧ୍ୱନି ସୃଷ୍ଟି ହୋଇଛି । ଏପରିକି ଦୀନକୃଷ୍ଣଙ୍କର ସରଳ ତରଳ

ତଥା ସାବଲୀଳ କବିତ୍ୱ ଗୋପାଳକୃଷ୍ଣ ଓ ବନମାଳୀ ପ୍ରଭୃତି ବୈଷ୍ଣବ ଗୀତିକାରମାନଙ୍କୁ ପ୍ରଭାବିତ କରିଛି । ଶ୍ରୀକୃଷ୍ଣଙ୍କର ବାଲ୍ୟ, ପୌଗଣ୍ଡ, କୈଶୋର ଲୀଳାର ବାତ୍ସଲ୍ୟ ସ୍ନେହ, ପ୍ରେମ ଆଦି ଭାବକୁ ଘେନି ବୈଷ୍ଣବ ଗୀତିକାରମାନେ ଯେଉଁ ରସୋତ୍ତୀର୍ଣ୍ଣ ସଂଗୀତ ଗୁଡ଼ିକ ରଚନା କରିଛନ୍ତି ତହିଁରେ ରସକଲ୍ଲୋଳର ସୁଲଭ ଲାଳିତ୍ୟ ଓ ସାବଲୀଳତା ପରିଦୃଷ୍ଟ ହୁଏ । ଏହିଦୃଷ୍ଟିରୁ ବିଚାର କରି ରସକଲ୍ଲୋଳର ସାର୍ଥକତା ପ୍ରତିପାଦନ କରାଯାଇ ପାରେ ।

ଦୀନକୃଷ୍ଣଙ୍କ ଭଳି କବି ଅଭିମନ୍ୟୁ ଜଣେ ପ୍ରତିଭା ସଂପନ୍ନ ବହୁ ଶାସ୍ତ୍ରଦର୍ଶୀ ପଣ୍ଡିତ ଥିଲେ । ସଂସ୍କୃତ ତଥା ପ୍ରାକୃତ ସାହିତ୍ୟ ମଧ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧାମଧ୍ୟ ଥିଲା । ସଂସ୍କୃତ ଭାଷାରେ ରଚିତ ବୈଷ୍ଣବ ଧର୍ମଗ୍ରନ୍ଥ ପ୍ରତି ସେ ଏକାନ୍ତ ଅନୁରକ୍ତ ଥିଲେ । ସର୍ବୋପରି କବିଗୁରୁ ଉପେନ୍ଦ୍ରଙ୍କର ସେ ଥିଲେ ପରମଶିଷ୍ୟ ସେଥିପାଇଁ ସେ କହିଛନ୍ତି—

"ଉପଇନ୍ଦ୍ର ପଦ ଅଭିମନ୍ୟୁ,<br>ଉପେକ୍ଷିତ ନୋହିବତ ଧନ୍ୟ ଧନ୍ୟ ।"

ଅଭିମନ୍ୟୁଙ୍କର ରସବତୀ କାବ୍ୟ ଉପେନ୍ଦ୍ରଙ୍କ 'ଲାବଣ୍ୟବତୀ' ଅନୁକରଣରେ ଲେଖିଥିଲା ଭଳି ମନେ ହୁଏ । 'ସୁଲକ୍ଷଣା'କାବ୍ୟ କଥାବସ୍ତୁ ସାରଳା ଦାସଙ୍କ ମହାଭାରତରୁ ଅଣାଯାଇଅଛି । ଉପେନ୍ଦ୍ର ଭଞ୍ଜ 'ସ' ଅକ୍ଷରରେ ସୁଭଦ୍ରା ପରିଣୟ ଲେଖିଲାଭଳି ଅଭିମନ୍ୟୁ ସେହି ଆଦ୍ୟ 'ସ' ରଖି

ଲାବଣ୍ୟବତୀ କାବ୍ୟ ରଚନା କରିଥିଲେ । ଏହା ଉପେନ୍ଦ୍ରଙ୍କ 'ଲାବଣ୍ୟବତୀ' ବୋଲି କାହାରି ଯେପରି ଭ୍ରମ ନହୁଏ ।

କବି ଅଭିମନ୍ୟୁ ବଙ୍ଗଳା, ହିନ୍ଦୀ, ପାର୍ସି ଭାଷା ଜାଣିଥିଲେ ଏବଂ ସେସବୁ ଭାଷାରେ କିଛି ଗ୍ରନ୍ଥ ପଢିଥିବା ସମ୍ଭବ । ବିଦଗ୍ଧ ଚିନ୍ତାମଣିରେ ଏଗୁଡ଼ିକର ଛାୟାପାତ ହୋଇ ଭଳି ମନେହୁଏ । ବିଶେଷ କରି ରୂପଗୋସ୍ୱାମୀ କୃତ ବିଦଗ୍ଧ ମାଧବ ନାଟକ, ଉଜ୍ଜ୍ୱଳ ନୀଳମଣି, ଭକ୍ତି ରସାମୃତ ସିନ୍ଧୁ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ପ୍ରଣୀତ ଚୌର ଚିନ୍ତାମଣି, ଯୁଗଳ ରସାମୃତ ଲହରୀ ଏବଂ ଉପେନ୍ଦ୍ରଙ୍କର ସମସ୍ତ ପ୍ରସିଦ୍ଧ କାବ୍ୟ ଓ ମହାକାବ୍ୟ ସେ ଗଭୀର ଅନୁଧ୍ୟାନର ସହ ଅଧ୍ୟୟନ କରିଥିଲେ । ତେଣୁ ଏ ସବୁ କାବ୍ୟର ପ୍ରଭାବ ବିଦଗ୍ଧ ଚିନ୍ତାମଣିରେ ପଡ଼ିବା ସ୍ୱାଭାବିକ ।

ଅନ୍ୟମାନଙ୍କୁ ବାଦ୍‌ଦେଇ କେବଳ ଭଞ୍ଜଙ୍କର ପ୍ରଭାବ ବିଷୟ୍ତ ଅନୁଧ୍ୟାନ କଲେ ଜଣାଯାଏ-ଅନେକ ଦିଗ୍ଦୃଷ୍ଟିରୁ ଅଭିମନ୍ୟୁ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଭଞ୍ଜଙ୍କର ଶୃଙ୍ଗାର ରସ ବହୁଳ ପରିବେଷଣ, ଅଳଙ୍କାର ବିନ୍ୟାସ, ପଣ୍ଡିତ ସୁଲଭ ଗାମ୍ଭୀର୍ଯ୍ୟ ଶାବ୍ଦିକତା ଓ ସାଙ୍ଗୀତିକତା ଅଭିମନ୍ୟୁଙ୍କୁ ବହୁଭାବରେ ପ୍ରଭାବିତ କରିଛି । କିନ୍ତୁ ଅନୁସରଣ ଓ ଅନୁକରଣ ବିଦଗ୍ଧ ଚିନ୍ତାମଣିରେ ହୋଇଥିଲେ ମଧ୍ୟ କବିଙ୍କ ମୌଳିକତା ଏଥିରେ ଯଥେଷ୍ଟ ପରିମାଣରେ ରକ୍ଷାଯାଇ ପାରିଛି । ଏପରିକି ଅଭିମନ୍ୟୁ ସ୍ଥାନେ ସ୍ଥାନେ ସ୍ୱଗୁରୁଙ୍କୁ ମଧ୍ୟ ବଳି ଯାଇଛନ୍ତି ।

ଭଞ୍ଜଙ୍କ ନାୟିକାର ରୂପବର୍ଣ୍ଣନା ଅଭିମନ୍ୟୁଙ୍କର ନାୟିକା ରାଧାର ରୂପ ବର୍ଣ୍ଣନା ଉପରେ ଯଥେଷ୍ଟ ପ୍ରଭାବ ପକାଇଛି ।

କେବଳ ଅଭିମନ୍ୟୁଙ୍କର ତ୍ରିଂଶ ଛାନ୍ଦକୁ ବିଚାର କଲେ ସେ ଭଞ୍ଜଙ୍କ ଲାବଣ୍ୟବତୀ ଦ୍ୱାରା କେତେଦୂର ପ୍ରଭାବିତ ସହଜରେ ଜଣା ପଡ଼ିଯିବ । ଶରତକାଳୀନ ସନ୍ଧ୍ୟା ବର୍ଣ୍ଣନା କରିବାକୁ ଯାଇ ଭଞ୍ଜ ଯେପରି ଲେଖିଛନ୍ତି, ଅଭିମନ୍ୟୁ ମଧ୍ୟ ପ୍ରାୟ ସେହିଭାବକୁ ଓ ସ୍ଥାନେ ସ୍ଥାନେ ଭାଷାକୁ ନେଇ ଛାନ୍ଦ ରଚନା କରିଛନ୍ତି । ଭଞ୍ଜଙ୍କର ‘ଲାବଣ୍ୟବତୀ’ର—

"ଚନ୍ଦସୁଖ ଚନ୍ଦନନ୍ଦ        ଛେଦନେ ହୀରକ ଚନ୍ଦ
ପିନ୍ଧିଛି ଜାତ ସିନ୍ଧୁରେ କାମ କି ରୋଷେ"
ସହିତ ବିଦଗ୍ଧ ଚିନ୍ତାମଣିର
"ତାତ ସିନ୍ଧି କି ବଳିବ        ବଚୁରେ କି କାମଦେବ
ମାଣିକ୍ୟ ହୀରା ରଥାଙ୍ଗ ପେଷି ଦେଇଛି"

ଭଞ୍ଜଙ୍କର ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ’ର ରୂପ ବର୍ଣ୍ଣନା ସହିତ ଅଭିମନ୍ୟୁଙ୍କର ‘ରାଧା’ଙ୍କର ରୂପବର୍ଣ୍ଣନାରେ ଭାଷା ଓ ଭାବ ଅନେକ ମିଳିଯାଏ । ବିଦଗ୍ଧ ଚିନ୍ତାମଣିରେ କବି ରାଧାଙ୍କର ଶୟନ ସ୍ଥାନରେ କୃଷ୍ଣଙ୍କୁ ସ୍ୱପ୍ନରେ ଆଣି ତାଙ୍କ ମୁଖରେ ଯେପରି ରାଧାଙ୍କର ବର୍ଣ୍ଣନା କରିଛନ୍ତି—ସେଥିରେ ଭଞ୍ଜଙ୍କର ‘ଲାବଣ୍ୟବତୀ’ର ପ୍ରଭାବ କିପରି ସ୍ପଷ୍ଟ ତାହା ଅନୁଭବ କରିବାର କଥା ।

ଶ୍ରୀମୁଖ ସ୍ୱେଦ ଜନିତେ କି ସୁନ୍ଦର,
ମୃଗାଙ୍କ ଅଙ୍କରୁ ଅମୃତ ବିନ୍ଦୁକି ପ୍ରତି ଲୋମୋଦ୍‌ଗମେ ପ୍ରଚୁର (ବି.ଚି)
"ଯୋଷା ମୁଖେ ସ୍ୱେଦ ବିନ୍ଦୁ ଗୁହିଁ ପୁଂସ ଲୋଭା,
ଇନ୍ଦୁ ଅମୃତ ବିନ୍ଦୁ ବହିଲ ପ୍ରାୟ ଶୋଭା ।" (ଲାବଣ୍ୟବତୀ)

କୃଷ୍ଣ ରାଧାଙ୍କର ଶୋଇବାର ଆକୃତିକୁ ଲକ୍ଷ୍ୟକରି କହିଛନ୍ତି—

"ବିଶ୍ୱଚିତ୍ତ ବଶ ପାଇ    ପ୍ରୀତି ମୂର୍ତ୍ତିମନ୍ତ ହୋଇ
ଅଣିମାଦ୍ୟ ଦେବ ଅଣିହୋଇ ଶୋଇଛନ୍ତି (ବି.ଚି)
ପଦ ସମ୍ଭବତ "ଅଣିମାଦ୍ୟ ସୁଖଦାୟୀ  ଶୋଇଅଛନ୍ତି ଅଣିହୋଇ"
(ଲାବଣ୍ୟବତୀ)

"ଶ୍ୱାସେ ପ୍ରଜ୍ୱଳିତ ଫୁଲ୍ଲ ଘୋଣା    ଶୋଭେ ନାଳ-ନାକଚଣା
ଓଷ୍ଠାରୁଣେ ଗୁମ୍ଫା ବିପରୀତ ପ୍ରଶାନ୍ତ
ଆରପାଶେ ଜାଲି ନଥ    ଫାନ୍ଦ ପାତି କି ମନ୍ମଥ
ଦୃଷ୍ଟି-ମୃଗ ଧରିବାକୁ କରିଛନ୍ତି ମତ ।
ପାନରୋଳା ଅଧର ଜ୍ୟୋତି,
ଫଂଗୁଖେଳା ଶ୍ରାନ୍ତ ଶୁଆ ଅରୁଣ ଗତି । (ବି.ଚି)
ସମ୍ଭବତ "ପାନ କଳ ପୂରି ତୁଣ୍ଡେ   ଫୁଟି ଦିଶୁଅଛି ଗଣ୍ଡେ
ମୁକୁରେ ଜବା କୁସୁମ ପ୍ରତିବିମ୍ବେ କି
ଶ୍ୱାସ ବଳେ ଫୁଲେ ଘୋଣା    ତହିଁ ନାଳା ନାକଚଣା
ଉତ୍ଫୁଲ୍ଲ ତିଳ ଫୁଲକୁ ଭୃଙ୍ଗ ଚୁମ୍ବେକି" । (ଲାବଣ୍ୟବତୀ)
ପୁଣି "ଏତେ ଭଲ ଆତୁର ହୋଇ
ଖୋରୁ ଗୃହରୁ ଉରୁଧରି ଦେଲା ଝୁଲାଇ (ବି.ଚି)
ଉପରେ 'ଲାବଣ୍ୟବତୀର'
'ଜାନୁଧରି ଦେଲା ଝୁଲାଇ,
ପୁଂସକର ଲଗି ନିଦ୍ରା ବିନାଶ ହୋଇ ।',

ଭଞ୍ଜଙ୍କର "ଯେତେଦୂରେ ପର ପଡ଼ିଥିଲେରେ ନବୀନା"
ର ପ୍ରଭାବ

"କାନ୍ତା ବୋଲାଏ କାନ୍ତର ସିନା ପୁଣି
ଗଛ ନାମରେ ବିକାର ଫଂଲ ଜାଣି (ବି.ଚି)

ଉପରେ ପଡ଼ିଛି । ସେହିପରି ଲାବଣ୍ୟବତୀରୁ "କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ" ପ୍ରଭୃତିର ଅନୁସରଣରେ ଅଭିମନ୍ୟୁ ଲେଖିଛନ୍ତି ।

"ଦୈବ ପୁରୁଷ କି ନବଘଣ
କଲବେଳେ ଗ୍ରାସ
ଦେଇ ଭୁଞ୍ଜିବାକୁ ସୁଧାରସ
ପକାଇ ପାଉଁଶ
ପୁଣି ସେ କୁଳଣ ଗୋ ସଖୀଚନ୍ଦ୍ର (ବି.ଚି)

ସେହିପରି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର କେତେକ ପଦରେ ଅନୁକୃତି କିପରି କରା ଯାଇଛି ଲକ୍ଷ୍ୟ କରିବା କଥା ।

"ନେତ୍ର ଗଣ୍ଡରେ ଥିଲା ଅଧୀରତା,
ନେଇ ଗଣ୍ଡରେ ଆଣି କଲା ରତା
କନ୍ୟାବର କରିବାର କଣ୍ଠାଇ
କନ୍ୟାବର ଚିତ୍ତୁ ଦେଲା ଛଡ଼ାଇ
ଚିହ୍ନ ବନ୍ଧ ଦରଶନେ ଥୋଇଲା,
ଚିହ୍ନ ବନ୍ଧନ ଚିତ୍ତକୁ ହୋଇଲା (କୋ.ବ୍ର.ସୁ)

"ସୁମନ୍ତ ଗଣ୍ଡରୁ ଅନ୍ତ ଚଞ୍ଚଳତା ଦୃଗଅଞ୍ଚଳକୁ ଆଶ୍ରେ କଲା
କଟି ଉନ୍ନତ ପ୍ରକଟି ଖିନ୍ନ ଗୁରୁ ଉରୁ ଗୁରୁ ତା ବଢ଼ାଇଲା
ଅତୁଳା, ପିତୁଳା-ଲୀଳା ସ୍ନେହ ତେଜି
ସମ୍ବନ୍ଧ ବନ୍ଧ ପଟଳରେ ନିବନ୍ଧ ସେ କାନ୍ତେ ଏକାନ୍ତେ ନମଜ୍ଜି ।" (ବି.ଚି)

ଏହିଭଳି ଲେଖି ବସିଲେ ବହୁ ଉଦାହରଣ ଦେଇହେବ । ତେଣୁ କୌଣସି ଦୃଷ୍ଟିରୁ ଅଭିମନ୍ୟୁଙ୍କ ଉପରେ ଭଞ୍ଜଙ୍କର ପ୍ରଭାବ ଅସ୍ୱୀକାର କରି ହେବନି ।

ଅଭିମନ୍ୟୁ ଯେ କେବଳ ଅନ୍ୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି ତାହା ନୁହେଁ, ଅନେକଙ୍କୁ ମଧ୍ୟ ପ୍ରଭାବିତ କରାଇଛନ୍ତି ।

ଏଣୁ ବିଦଗ୍ଧ ଚିନ୍ତାମଣିର ପ୍ରଭାବ ପରବର୍ତ୍ତୀ ଯୁଗ କାବ୍ୟ କବିତା ମାନଙ୍କରେ ପରିଲକ୍ଷିତ ହୁଏ । କବି ସୂର୍ଯ୍ୟ ବଳଦେବ ରଥ,ଗୋପାଳ କୃଷ୍ଣ, ବନମାଳୀ ପ୍ରଭୃତି ବୈଷ୍ଣବ ଭକ୍ତକବିମାନେ ବିଦଗ୍ଧ ଚିନ୍ତାମଣିର ମଧୁର ରସ ଲଳିତ ପଦ ବିନ୍ୟାସ ଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ଉତ୍କଳର ପୁରପଲ୍ଲୀରେ ଗୌଡ଼ୀୟ ବୈଷ୍ଣବ ଧର୍ମ ପ୍ରସାର ଓ ପ୍ରତିଷ୍ଠା ଦିଗରେ ଏଗ୍ରନ୍ଥ ମଧ୍ୟ ବିଶେଷ ସହାୟକ ହୋଇଛି । ତେଣୁ କୁହାଯାଏ—

"ଉପମା ଭଞ୍ଜ ବୀରସ୍ୟ ତସ୍ୟୈବ ଶ୍ଚାର୍ଥ ଗୌରବସ୍,
କଲ୍ଲୋଳେ ପଦ ଲାଳିତ୍ୟଂ ସନ୍ତି ଚିନ୍ତାମଣୌ ତ୍ରୟଃ ।"

ଏଣୁ ଉପମା, ଅର୍ଥ ଗୌରବ ଓ ପଦଲାଳିତ୍ୟ ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିରେ କେବଳ ଦେଖା ଯାଇଥାଏ । ଏହାହିଁ ଏ କାବ୍ୟର ବିଶେଷତ୍ୱ । ଏହି ବିଶେଷତ୍ୱ ଯୋଗୁଁ ପରବର୍ତ୍ତୀ କାଳରେ ବହୁ କବି କାବ୍ୟ କବିତା ରଚନାରେ ବିଦଗ୍ଧ ଚିନ୍ତାମଣିର ଅନୁକରଣ ବା ଅନୁସରଣ କରି ନିଜକୁ ତଥା କବିଙ୍କୁ ଧନ୍ୟ କରିଛନ୍ତି ।

## ଦୀନକୃଷ୍ଣ ଓ ଅଭିମନ୍ୟୁ

ଓଡ଼ିଆ ସାହିତ୍ୟରେ ରୀତିଯୁଗର କବିମାନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲେ ସର୍ବପ୍ରଥମେ ଦୃଷ୍ଟି ଗୋଚର ହୁଅନ୍ତି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ । କିନ୍ତୁ କଲ୍ଲୋଳ କବି ଦୀନକୃଷ୍ଣ ଓ ବିଦଗ୍ଧ କବି ଅଭିମନ୍ୟୁ ହେଉଛନ୍ତି ରୀତିଯୁଗର ଅନ୍ୟତମ ଯୋଗଜନ୍ମା, ଯାହାଙ୍କର କୃତି ଆଜି ଓଡ଼ିଆ ସାହିତ୍ୟକୁ ମଧ୍ୟ ଧନ୍ୟ କରିଛି । ଏହି

ଦୁଇ କବିଙ୍କୁ ତୁଳନା କରିଲେ ଦୁହିଁଙ୍କ ମଧ୍ୟରେ ବହୁ ସାମ୍ୟ ଓ ବୈଷମ୍ୟ ପରିଦୃଷ୍ଟ ହୁଏ ।

ଉଭୟେ ଗୋଟିଏ ଭାବକୁ ନିଜର ଅନୁଭୂତି ମାଧ୍ୟମରେ ଓ ନିଜର ସ୍ୱତନ୍ତ୍ର ଶୈଳୀ ଜରିଆରେ ପ୍ରକାଶ କରିବାକୁ ପ୍ରୟାସୀ ହୋଇ ଉଠିଛନ୍ତି । ଉଭୟେ ଯଥାକ୍ରମେ ରସ କଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣିରେ ଯେଉଁ ରସର ପରିବେଷଣ କରିଛନ୍ତି, ସେହି ରସହିଁ ତାଙ୍କ ନିଜର ଭାବ ପ୍ରକାଶ କରିବାକୁ ଯଥେଷ୍ଟ ସ୍ୱାଧୀନତା ଦେଇଛି । ଭଞ୍ଜଯୁଗର ରୀତିକୁ ଅନୁସରଣ କରି ଅଳଙ୍କାର ପ୍ରୟୋଗର ବିଭିନ୍ନ ପରୀକ୍ଷା ନିରୀକ୍ଷା ଚଳାଇ ଚିନ୍ତ ଶକ୍ତି ମନ୍ଥନରେ ନାୟକ ନାୟିକାଙ୍କର ଚରିତ୍ର ଚିତ୍ରଣ କରି କାବ୍ୟ କୋଣାର୍କର ମୂର୍ତ୍ତି ମାରିଛନ୍ତି । ଉଭୟେ କଳ୍ପନାର ଐନ୍ଦ୍ରଜାଳିକ ଶକ୍ତିରେ କାବ୍ୟକ ପରମ୍ପରା ରକ୍ଷାକରି ସ୍ୱମତ ପ୍ରତିଷ୍ଠା କରିବା ଶୈଳୀବାଦୀ ମାନଙ୍କର ପ୍ରଧାନ ଲକ୍ଷଣ । କିନ୍ତୁ ଏମାନଙ୍କର ବିଶେଷତ୍ୱ ଏହି ଯେ, ବୈଷ୍ଣବ କାବ୍ୟ ମାନଙ୍କରେ ଅଳଙ୍କାରର ବାହୁଲ୍ୟ ଓ କଗୂଢ଼ ଭାଷା:ବନ୍ଧନୀ ମଧ୍ୟରେ ମଧ୍ୟ ସେମାନେ କାବ୍ୟର ସ୍ୱାଭାବିକତା ରକ୍ଷା କରିବାକୁ ସମର୍ଥ ହୋଇଛନ୍ତି । ଫଳରେ ଉଭୟର ଏହି ମଧୁର ସମାବେଶ ବୈଷ୍ଣବ କାବ୍ୟକୁ ଅଧିକ ମନୋଜ୍ଞ କରି ତୋଳିଛି ।

କାବ୍ୟର କଥାବସ୍ତୁର ଗ୍ରନ୍ଥନ କୌଶଳ ନୂତନତ୍ୱର ସୂଚନା ଦିଏନା, ସବୁ ଗୁଡ଼ିକ ଗୋଟିଏ ଛାଞ୍ଚରେ ଗଢ଼ାହେଲା ଭଳି ମନେହୁଏ । କାବ୍ୟାରମ୍ଭ କରି ଓ ତତ୍ ସଙ୍ଗେ କାବ୍ୟକ କୌତୁହଳ ରକ୍ଷାକରି ,ଏହାକୁ ଚରମ ସୀମାରେ ଉପନୀତ କରାଇ ଅବରୋହ ଅବସ୍ଥାରେ ସମାପ୍ତି ଟାଣିବା ପ୍ରାୟ କୌଣସି ବୈଷ୍ଣବ

କାବ୍ୟରେ ଦେଖାଯାଏ ନାହିଁ । ତେଣୁ ସେହି ଦୃଷ୍ଟିରୁ ବିଚାରକରି ବସିଲେ ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣି ଏ ଦୋଷରୁ ବାଦ୍ ଯିବେ ବା କିପରି ? ବୈଷ୍ଣବକାବ୍ୟରେ ଭୂରିଏତ ନାନା ତତ୍ତ୍ୱ ଓ ବୈଷ୍ଣବୀୟ ଦର୍ଶନ ଶାସ୍ତ୍ରଯୁକ୍ତ ଲଳିତ ପଦାବଳୀ ଅଛି । ମାତ୍ର କାବ୍ୟର ବିଷୟବସ୍ତୁର କ୍ରମିକ ପରିବେଶଣ ରୀତିଯୁଗର ନ୍ୟୂନ ରକ୍ଷା ଦୃଷ୍ଟିରୁ ଖଣ୍ଡିତ । ତେଣୁ ପ୍ରାୟ ସମସ୍ତ ବୈଷ୍ଣବ କାବ୍ୟରେ ମଝେ ମଝେ ସୁନ୍ଦର ମନୋଜ୍ଞ ବର୍ଣ୍ଣନାରେ ଓ ଉଚ୍ଚ ଆଦର୍ଶରେ ପାଠକ ଆଶ୍ୱସ୍ତ ହେଲେ ମଧ୍ୟ କାବ୍ୟରସାମୃତ ପାନକରି ବାସ୍ତବ ସଂସାର ଦୁଃଖ ଯନ୍ତ୍ରଣାର ମର୍ମଦାହ ଭୁଲିବାକୁ ଇଚ୍ଛା କରିଥିଲେ ମଧ୍ୟ କୌତୁହଳ ଜନ୍ମେନାହିଁ । ଫଳରେ କାବ୍ୟର ମୂଲ୍ୟ ହ୍ରାସ ପ୍ରାପ୍ତହୁଏ । ଆଲୋଚ୍ୟ ଉଭୟ କାବ୍ୟରେ ତାହାହିଁ ହୋଇଛି ।

ଉଭୟ କବି ସ୍ୱ ସ୍ୱ ସୃଷ୍ଟିକୁ ବିଭିନ୍ନ ଛନ୍ଦ ମାଧ୍ୟମରେ ପ୍ରକାଶ କରି କାବ୍ୟକୁ ସଂଗୀତ ମୁଖର କରି ପାରିଛନ୍ତି । ବିଭିନ୍ନ ଛନ୍ଦ ମାଧ୍ୟମରେ ସାଙ୍ଗୀତିକତା ରକ୍ଷା କରି କାବ୍ୟ ରଚନା, ରୀତିଯୁଗୀୟ ପରମ୍ପରା ଅଟେ । ଶାରଳା ଦାସ କିମ୍ବା ପଞ୍ଚସଖା ଯୁଗରେ ଛନ୍ଦର ବିଶେଷ ପ୍ରୟୋଗ ନଥିଲା କିମ୍ବା ଗ୍ରନ୍ଥକୁ ସଂଗୀତ ମୁଖର କରିବା ଉଦ୍ଦେଶ୍ୟ ସେମାନଙ୍କର ନଥିଲା । କିନ୍ତୁ ରୀତିଯୁଗରେ ବିଶେଷକରି ଭଞ୍ଜଙ୍କଠାରୁ ଏହାର ବହୁଳ ପ୍ରୟୋଗ ଦେଖାଦେଲା । ଦୀନକୃଷ୍ଣ ଓ ଅଭିମନ୍ୟୁ ଉଭୟେ ଏହି ପରମ୍ପରା ରକ୍ଷା କରିବାକୁ ସକ୍ଷମ ହୋଇଛନ୍ତି । ତେଣୁ ଉଭୟ କାବ୍ୟ ଯଦି ଜନପ୍ରିୟତାରେ ପରିଣତ ହୁଏ, ତାହାହେଲେ ସେ ହେଉଛି ତାହାର ଗୋଟିଏ ଗୁଣ ଯୋଗୁଁ ଓ ତାହା ହେଉଛି କାବ୍ୟର ସାଙ୍ଗୀତିକତା । ଉତ୍କଳର ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ପାଠକ ପକ୍ଷରେ ରସକଲ୍ଲୋଳର ଭାଷା ଓ ଭାବ

ହୃଦୟଙ୍ଗମ କରିବା ବିଶେଷ କଷ୍ଟ ନୁହେଁ, କିନ୍ତୁ ବିଦଗ୍ଧ ଚିନ୍ତାମଣିର ଭାଷା ସାଧାରଣରେ ବୋଧ ନହେଲେ ମଧ୍ୟ ତାହାର ସାଙ୍ଗୀତିକତା ଯୋଗୁଁ ସର୍ବସାଧାରଣରେ ଆଦରଣୀୟ । ଉଭୟ କାବ୍ୟର ଛାନ୍ଦଗୁଡ଼ିକୁ ସ୍ୱର ସଂଯୋଜନ କରି ଆବୃତ୍ତି କଲେ କି ଶିକ୍ଷିତ ଓ ଅଶିକ୍ଷିତ ସମସ୍ତଙ୍କ ନିକଟରେ ମୋହନ ମନ୍ତ୍ରର କାର୍ଯ୍ୟକରେ । କାବ୍ୟରେ ଆଳଙ୍କାରିକ ଭାଷାର ବହୁଳ ବ୍ୟବହାର ହୋଇଥିବାରୁ ଗୀତ ହେବା କାଳରେ ତନ୍ମୟ କରାଏ । କାବ୍ୟର ଦର୍ଶନ ତତ୍ତ୍ୱ ଅବୋଧ ହେଲେ ମଧ୍ୟ, ଏହାର ସଙ୍ଗୀତ ମୁଖର ଗୁଣ କାହିଁ କେଉଁ ଏକ ଅତୀନ୍ଦ୍ରିୟ ଜଗତକୁ ନେଇଯାଏ । ତେଣୁ ଲୋକ ତନ୍ମୟ ହୁଏ ।

ଉଭୟ କାବ୍ୟକୁ କବି ବିଭିନ୍ନ ଛାନ୍ଦରେ ବିଭକ୍ତ କରି ବିଭିନ୍ନ ରାଗର ପ୍ରୟୋଗ କରିଛନ୍ତି । ଏହା ଫଳରେ ଗୋଟିଏ ରାଗରେ ଗାନହେବା ଶ୍ରୁତିକଟୁ ଦୋଷ ଦୂରିଭୂତ ହୋଇଛି । ଫଳରେ ପାଠକ ବିଭିନ୍ନ ରାଗ ମଧ୍ୟରେ ପ୍ରବେଶ କରି ରାଧାକୃଷ୍ଣଙ୍କ ପ୍ରେମମାର୍ଗରେ ବିଚରଣ କରେ । ଉଭୟ କାବ୍ୟରେ ମଙ୍ଗଳ, ଚିନ୍ତାଭୈରବ, କଲ୍ୟାଣ ପଞ୍ଚ ତାଳ, ତୋଡ଼ି, ବଙ୍ଗଳାଶ୍ରୀ, କୌଶିକ, ଆନନ୍ଦଭୈରବ, ଦେଶାକ୍ଷ ପ୍ରଭୃତି ରାଗର ପ୍ରୟୋଗ କରାଯାଇଛି ।

ଉଭୟେ ଜଟିଳ ବୈଷ୍ଣବତତ୍ତ୍ୱକୁ ସରଳ ତରଳକରି ପରିବେଷଣ କଲେ ମଧ୍ୟ ଅନେକ ସ୍ଥାନରେ ତାହା ସର୍ବଜନବୋଧ ହୋଇ ପାରିନି । ତାହାର କାରଣ ଧର୍ମପ୍ରାଣ ବ୍ୟକ୍ତିର ଅନୁଭୂତି ସହଜରେ ସାଧାରଣରେ ଅନୁଭୂତ ହୁଏନା । ଏତଦ୍‌ବ୍ୟତୀତ ସବୁ ଅନୁଭୂତି ଗୁଡ଼ିକ ହିଁ ଭାଷା ମଧ୍ୟରେ ପ୍ରକାଶ କରାଯାଇ ପାରେନା— ଯାହା ଫଳରେ ଏହା ଅବୋଧ ରହିଯାଏ । ବିଶେଷ କରି ଉଭୟ

କବି ଧର୍ମର ତତ୍ତ୍ୱକୁ ଯେପରି ମାନବୀୟ ପ୍ରେମ ମାଧ୍ୟମରେ ପ୍ରକାଶ କରିଛନ୍ତି, ତାହା ବାସ୍ତବ କ୍ଷେତ୍ରରେ ପାଳନ କରିବା ଅସମ୍ଭବ ହୋଇଉଠେ । ଇନ୍ଦ୍ରିୟାଶ୍ରିତ ହୋଇ ଏହା ଅନୁଭବ କରିବା ସହଜ ସାଧ୍ୟ ନୁହେଁ ।

ଦୁଇ କବି ରାଧା ଓ କୃଷ୍ଣଙ୍କୁ ନିଜର କାବ୍ୟରେ ନାୟକ ନାୟିକା ରୂପେ ଗ୍ରହଣ କରିଛନ୍ତି । ଫଳରେ କଥାବସ୍ତୁର ଗ୍ରନ୍ଥନ କୌଶଳ ପ୍ରାୟ ଏକ ଓ ଚରିତ୍ର ଚିତ୍ରଣରେ ଯେପରି କିଛି ବିଶେଷତ୍ୱ ନାହିଁ ।

ଉଭୟ କାବ୍ୟରେ ପ୍ରକୃତି ଚିତ୍ରଣ ଗତାନୁଗତିକ । ପ୍ରକୃତି ଚିତ୍ରଣ ଉଭୟ ଆତ୍ମ ଓ ବସ୍ତୁ କେନ୍ଦ୍ରିକ ନହୋଇ କେବଳ ବସ୍ତୁ କେନ୍ଦ୍ରିକ ହୋଇଛି । ଫଳରେ ଉଭୟ କବି ପ୍ରକୃତିର ବାହ୍ୟ ରୂପକୁ ହିଁ ବର୍ଣ୍ଣନା କରିବାରେ ଲାଗିପଡ଼ିଛନ୍ତି । ନିଜର ଆବଶ୍ୟକତା ଦୃଷ୍ଟିରୁ ପ୍ରକୃତିକୁ ପୃଷ୍ଠପଟରେ ରଖି ଆବଶ୍ୟକ ଅନୁସାରେ ପ୍ରକୃତି ଚିତ୍ରଣରେ ପ୍ରୟାସୀ ହୋଇଛନ୍ତି । ନାୟକ ନାୟିକାଙ୍କର ରୂପବର୍ଣ୍ଣନା କରିବାପାଇଁ କେବଳ ମାତ୍ର ଯାହା ପ୍ରକୃତିକୁ ବ୍ୟବହାର କରାଯାଇଛି । ତା ନହେଲେ ପ୍ରକୃତିର ଯେ ଏକ ସ୍ୱତନ୍ତ୍ର ଆତ୍ମାଅଛି ଓ ତାହା ମାନବ ସମାଜକୁ ସବୁବେଳେ ତରଳ ଇଙ୍ଗିତ ଦେଉଛି ଏହା ଉଭୟ କବି ଅନୁଭବ କରି ନାହାନ୍ତି । ବିଦଗ୍ଧ ଚିନ୍ତାମଣିରେ ପ୍ରକୃତିର ସ୍ୱତନ୍ତ୍ର ବର୍ଣ୍ଣନା ନାହିଁ । ମାତ୍ର ଉପମା, ରୂପକ, ଉତପ୍ରେକ୍ଷାଦି ଦ୍ୱାରା ଅଭିମନ୍ୟୁ ପ୍ରକୃତି ଚିତ୍ରଣରେ ବ୍ରତୀ ହୋଇଛନ୍ତି । ଏହା ସ୍ଥାନେ ସ୍ଥାନେ ଅସ୍ୱାଭାବିକ ତଥା ଅନାବଶ୍ୟକ ହୋଇ ପଡ଼ିଛି ବୋଲି ମନେହୁଏ । କିନ୍ତୁ ଦୀନକୃଷ୍ଣ ପ୍ରକୃତି ବର୍ଣ୍ଣନାରେ

ସିଦ୍ଧହସ୍ତ । ଷଡ଼ଋତୁ ଓ ପ୍ରଭାତ ବର୍ଣ୍ଣନାରେ ରସକଲ୍ଲୋଳ ତତ୍କାଳୀନ ଯେକୌଣସି କବିଙ୍କ ସହିତ ସମକକ୍ଷ । ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ ଯେ ଘନକୃଷ୍ଣଙ୍କ ଋତୁ ବର୍ଣ୍ଣନା ଅନେକାଂଶରେ ଶୃଙ୍ଗାର ରସର ଉଦ୍ଦୀପନ ବିଭାବ ସ୍ୱଭାବରେ ସ୍ଥାନ ଲାଭ କରିଛି ।

ଉଭୟ କାବ୍ୟରେ ବିଭିନ୍ନ ଅଳଙ୍କାର ପ୍ରୟୋଗ କରାଯାଇଛି । କିନ୍ତୁ ଅଭିମନ୍ୟୁ ସୁଖ୍ୟାତଃ ଯେପରି ଅଳଙ୍କାର ଉପରେ ନିର୍ଭର କରିଛନ୍ତି ଘନକୃଷ୍ଣଙ୍କର ତାହା ହୋଇନି । ଘନକୃଷ୍ଣ ସହଜ ସରଳ ଭାଷାରେ ସ୍ୱଭାବୋକ୍ତି ଅଳଙ୍କାର ପ୍ରଭୃତି ଅର୍ଥାଳଙ୍କାରର ବହୁଳ ବ୍ୟବହାର କରି କାବ୍ୟକୁ ରସାଳ କରିଛନ୍ତି । କିନ୍ତୁ ଅଭିମନ୍ୟୁ ଭଞ୍ଜଙ୍କ ପଦାଙ୍କ ଅନୁସରଣ କରି ଶବ୍ଦାଳଙ୍କାରର ଅନେକ ପ୍ରୟୋଗ କରିଛନ୍ତି । ସେଥିପାଇଁ ଏହା ରସକଲ୍ଲୋଳ ଭଳି ଅନୁପ୍ରାସ ଓ ୧୬ପ୍ରକାର ଯମକ ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିରେ ବ୍ୟବହାର କରିଛନ୍ତି । ଏହିପରି ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରି ଦେଖିଲେ ଉଭୟ କବିଙ୍କ ମଧ୍ୟରେ ବହୁ ସାମ୍ୟ ପରିଲକ୍ଷିତ ହୁଏ ।

ଉଭୟ ଅଭିମନ୍ୟୁ ଓ ଘନକୃଷ୍ଣଙ୍କ ମଧ୍ୟରେ କେତେକ ପାର୍ଥକ୍ୟ ମଧ୍ୟ ଲକ୍ଷ୍ୟ କରାଯାଏ । ପ୍ରଥମେ ଦୁଇ କବିଙ୍କର କାଳଗତ ପାର୍ଥକ୍ୟପ୍ରତି ଦୃଷ୍ଟି ଦେବାକଥା । ଘନକୃଷ୍ଣ ଭଞ୍ଜଙ୍କର ଅଗ୍ରଜ ଥିଲେ । ତେଣୁ ସମସାମୟିକ ହେଲେହେଁ ପୂର୍ବଜ, କିନ୍ତୁ ଅଭିମନ୍ୟୁ ଭଞ୍ଜଙ୍କର ପରବର୍ତ୍ତୀ କବି । ତେଣୁ ସେ ସମ୍ପୂର୍ଣ୍ଣ ଭଞ୍ଜଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ତେଣୁ ସେ ଏକଥା ମଧ୍ୟ ସ୍ୱୀକାର କରିଛନ୍ତି

ଯେ "ଉପଇନ୍ଦ୍ର ପଦ ଅଭିମନ୍ୟୁ ପାଶୋର ନ ଯିବତ ବନ୍ଧୁବନୁ" ରୀତିଯୁଗ କାବ୍ୟ ମାନଙ୍କୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଧନକୃଷ୍ଣ ଉପେନ୍ଦ୍ର ଓ ଅଭିମନ୍ୟୁ ନିଜର ପାଣ୍ଡିତ୍ୟ ଦୃଷ୍ଟିରୁ କିମ୍ବା ପ୍ରତିଷ୍ଠା ଦୃଷ୍ଟିରୁ ସମଧର୍ମୀ କାବ୍ୟ ରଚନା କରିଥିଲେ । କିମ୍ବଦନ୍ତୀ କହେ ଧନକୃଷ୍ଣଙ୍କ "ରସକଲ୍ଲୋଳ"କୁ ସମାଲୋଚନା କରି ଭଞ୍ଜ ଲେଖିଥିଲେ 'କଳାକଉତୁକ' । 'ରସକଲ୍ଲୋଳ' 'କ' ଅକ୍ଷର ହୋଇଛି ନିୟମ । ସେହିପରି 'କଳାକଉତୁକ' ମଧ୍ୟ 'କ' ଅକ୍ଷରରେ ଲିଖିତ ହୋଇଥିଲା ସେହି କୃଷ୍ଣ ଚରିତକୁ ଅବଲମ୍ବନ କରି । ଖାଲି ସେତିକି ନୁହେଁ, ରସକଲ୍ଲୋଳର ପ୍ରଥମ ଛାନ୍ଦର ୨୨ଟି ପଦର ୪୪ଟି ପାଦ ଯେପରି ଆଦ୍ୟ 'କ' ଓ ପ୍ରାନ୍ତ 'କ' ଠିକ୍ ସେହିପରି 'କଳାକଉତୁକ' ସମଗ୍ର କାବ୍ୟଟିର ଆଦ୍ୟ ଓ ପ୍ରାନ୍ତ ପାଦ 'କ' ଅକ୍ଷରରେ ଲିଖିତ ହୋଇଛି । ଧନକୃଷ୍ଣ 'ରସକଲ୍ଲୋଳ' ପାଦ ଆରମ୍ଭରେ ବହୁବାର କୃଷ୍ଣ ଶବ୍ଦ ବ୍ୟବହାର କରି 'କ' ନିୟମ ରକ୍ଷା କରିବାକୁ କୌଣସି ମତେ କ୍ଷମ ହୋଇଛନ୍ତି । କିନ୍ତୁ ଭଞ୍ଜ ପ୍ରତିଜ୍ଞାବଦ୍ଧ ହେଲେ ଭଳି ସମଗ୍ର କଳାକଉତୁକର ପାଦ ଆରମ୍ଭରେ ଥରେ ମାତ୍ର କୃଷ୍ଣ ଶବ୍ଦ ବ୍ୟବହାର କରିଛନ୍ତି । ସେହିପରି ଅଭିମନ୍ୟୁ ଭଞ୍ଜଙ୍କର 'ଲାବଣ୍ୟବତୀ' କାବ୍ୟ ଅବଲମ୍ବନରେ 'ରସବତୀ' କାବ୍ୟ ରଚନା କରିଛନ୍ତି ଏବଂ ସେ ଲାବଣ୍ୟବତୀ କାବ୍ୟର ପ୍ରଭାବ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣିରେ ଛତେ ଛତେ ଦୃଷ୍ଟିଗୋଚର ହୁଏ । ଭଞ୍ଜଙ୍କର ଲାବଣ୍ୟବତୀର ସ୍ୱପ୍ନର ମିଳନକୁ କବି ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିରେ ପ୍ରାୟ ସମ୍ପୂର୍ଣ୍ଣ ଗ୍ରହଣ କରିଛନ୍ତି । ଏପରିକି କେତେକ ପଦ୍ୟାଂଶକୁ ଆଣି ଥୋଇ ଦେଇଛନ୍ତି । ତେଣୁ ଭଞ୍ଜଙ୍କର ପଦ ଯୋଜନା, ଆଳଙ୍କାରିକତା, ବିଷୟବସ୍ତୁ ସଂଯୋଜନା ଓ

ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଗୃହସ୍ଥଙ୍କୁ ଅଭିମନ୍ୟୁ ସଂପୂର୍ଣ୍ଣ ଗ୍ରହଣ କରିଛନ୍ତି । ଏହା ଅନୁସରଣ ଓ ଅନୁକରଣ ପରିଚ୍ଛେଦରେ ସୂଚିତ ହୋଇ ଯାଇଛି ମଧ୍ୟ । କିନ୍ତୁ ଧୀନକୃଷ୍ଣ ଆଳଙ୍କାରିକ ଭାଷାର ବର୍ଣ୍ଣନାକୁ ପ୍ରାୟ ତ୍ୟାଗକରି ସରଳ ତରଳ କାନ୍ତ କୋମଳ ଭାଷାର ଆଶ୍ରୟ ନେଇଛନ୍ତି । ଶାବ୍ଦିକତାର ପାର୍ଥକ୍ୟ ବିଶେଷ ଦେଖା ଦେବାର କାରଣ, ଉଭୟଙ୍କର ପାଣ୍ଡିତ୍ୟ ଅର୍ଥାତ ଧୀନକୃଷ୍ଣ ଅଭିମନ୍ୟୁଙ୍କ ଠାରୁ ପଣ୍ଡିତ ନଥିଲେ । କିନ୍ତୁ ହେଲେ କଣ ହେବ, ଭକ୍ତ ଧୀନକୃଷ୍ଣ ନିଜର ଭାବକୁ ଯେପରି ସହଜ ସ୍ୱଚ୍ଛନ୍ଦ ଗତିରେ ପ୍ରକାଶକରି ପାରିଛନ୍ତି ଅଭିମନ୍ୟୁଙ୍କ ଦ୍ୱାରା ତାହା ସମ୍ଭବ ହୋଇନି । ତାଙ୍କୁ ବହୁ ଆଳଙ୍କାରିକ ଭାଷାର ପ୍ରୟୋଗ କରିବାକୁ ପଡ଼ିଛି । ତେଣୁ କୁହାଯାଇପାରେ, ଯେଉଁ ତରୁଣି ସୌନ୍ଦର୍ଯ୍ୟରେ ଓ ଗୋଟିଏ କଟାକ୍ଷରେ ମୁନିଜନ ମନ ବିମୋହନ କରିପାରେ ତାର ଅଳଙ୍କାରର ଆବଶ୍ୟକ କ'ଣ ? ବା ପୋଥିଏ କଥା କହିବାର ଦରକାର କ'ଣ ? ଏହି ଦୃଷ୍ଟିରୁ ବିଚାରକରି ବସିଲେ ଅଭିମନ୍ୟୁଙ୍କ ଅପେକ୍ଷା ଧୀନକୃଷ୍ଣ ବଡ଼ । ସରଳ ତରଳ ଭାଷା ସଂଯୋଜନାରେ ଧୀନକୃଷ୍ଣ କିପରି ଧୂରନ୍ଧର, ତାହା ଗୋଟିଏ ପଦରୁ ଜଣା ପଡ଼ିଯିବ । ଗ୍ରାମ ପରିବେଶକୁ ନେଇ କିପରି ସର୍ବଜନ ଅନୁଭୂତିକୁ ରୂପ ଦେଇଛନ୍ତି ତାହା ଲକ୍ଷ୍ୟ କରିବା କଥା । ନନ୍ଦ କୃଷ୍ଣଙ୍କୁ ସ୍ନେହ କରୁଛନ୍ତି—

"କେତେବେଳେ ନନ୍ଦ କାନ୍ଧେ ବସି ଗୃହ ମାଗନ୍ତି ରଜନୀ ସମୟେ
କହି ମନ ତୋଷ ଜହ୍ନମାମୁଁ ଆସ ଆସ ବୋଲନ୍ତି ନନ୍ଦରାୟେ ।"

କିନ୍ତୁ ଅଭିମନ୍ୟୁଙ୍କର ଏ ଭାଷା ଓ ଭାବ ଆସିବ କାହୁଁ ? ସେ କୃଷ୍ଣଙ୍କ ବାଲ୍ୟକାଳକୁ ଗୋଟିଏ ପଦରେ ଶେଷକରି ଲେଖିଲେ

"ବାଲ କାଲ ଖିଞ୍ଚ କ୍ରମେ ଭୁଟିଲା
ବାଳକ ସଙ୍ଗରୁ ମନ୍ତ ହଟିଲା ।
ସମବୟୂ ସଖା ପ୍ରୀତି ଘଟିଲା ।
ଗୃହୁଷ କଥା ମାନ ପ୍ରକଟିଲା ସେ
କାମେ ଚେଷ୍ଟା ଚହଟିଲା ଯେ
ପଢ଼ି-ଗୁଣ-ମତ୍ତ ଧୃତ ସମ୍ପତ୍ତି କି ସମ୍ବଳ କରି ଲୁଟିଲା ଯେ ।"

ଏଥିରୁ ଅଭିମନ୍ୟୁଙ୍କର ସ୍ୱଭାବ ସୁନ୍ଦର ବର୍ଣ୍ଣନା କ'ଣ ବା ଲକ୍ଷ୍ୟ କରାଯାଇପାରେ । ରସକଲ୍ଲୋଳରେ କୃଷ୍ଣଙ୍କର ବାଲ୍ୟଲୀଳା ବର୍ଣ୍ଣନା ଅଭିମନ୍ୟୁଙ୍କ ନିକଟରେ କାହିଁ ? ବଙ୍ଗ ସାହିତ୍ୟରେ ଯେଉଁ ବୈଷ୍ଣବୀୟ କାବ୍ୟ କବିତା ଲେଖାଯାଇଅଛି ଓ ତହିଁରେ ଯେପରି ପୁରପଲ୍ଲୀର ନବଳ ପ୍ରକୃତିର ରୂପ ଦିଆ ଯାଇଅଛି, ସେ ବର୍ଣ୍ଣନା ଅଭିମନ୍ୟୁଙ୍କ ନିକଟରେ ଆଶା କରିଥିବା ବୃଥା । ବରଂ ଯାନକୃଷ୍ଣ କୃଷ୍ଣଙ୍କର ବାଲଲୀଳା, ଗୋଷ୍ଠଲୀଳା, ମାଧ୍ୟମରେ ଯେଉଁ ଭାରତୀୟ ନବଳ ପଲ୍ଲୀ ପ୍ରକୃତିର ରୂପ ଆଙ୍କି ନାହାନ୍ତି ତାହା ବହୁ ବଙ୍ଗୀୟ ବୈଷ୍ଣବ କାବ୍ୟକୁ ନିନ୍ଦା କରିପାରେ । ଅଭିମନ୍ୟୁଙ୍କର ଅଭିଜାତ ସାମନ୍ତବାଦୀ ଭାଷା ସଂସ୍କୃତ ପଣ୍ଡିତ ମାନଙ୍କର ଗର୍ବଖଣ୍ଡନ କରିପାରେ । ଅଭିମନ୍ୟୁ ବୈଷ୍ଣବୀୟ ବାୟୁମଣ୍ଡଳରେ ଉତ୍କଳୀୟ ମଧ୍ୟଯୁଗୀୟ ସାମନ୍ତବାଦୀ ଭାବଧାରାକୁ ମିଶାଇ ବୈଷ୍ଣବୀୟ ପରମ୍ପରାର ସ୍ୱାତନ୍ତ୍ର୍ୟ ନଷ୍ଟ କରିଥିବାର ମନେହୁଏ । ସେ ଗ୍ରନ୍ଥ ଆରମ୍ଭରୁ ସୂଚନା ଦେଇ "ଦ୍ରବ୍ୟ ଅଦ୍ରବ୍ୟ ଭାଷାର ପଦହେବ ସିଦ୍ଧି" ବୋଲି କହିଥିଲେ ମଧ୍ୟ କାବ୍ୟରେ ଦ୍ରବ୍ୟଭାଷା ଯେ ଭାବରେ ବ୍ୟବହାର କରାଯାଇଅଛି, ଅଦ୍ରବ୍ୟ ଭାଷା ସେହି ପରିମାଣରେ କାହିଁ ?

ଅଭିମନ୍ୟୁ ଲୋକ ବ୍ୟବହୃତ ହିନ୍ଦୀ, ଫାର୍ସି ଶବ୍ଦ ବ୍ୟବହାର କରି ଓଡ଼ିଆ ଭାଷାର କଳେବର ବୃଦ୍ଧି କରିଛନ୍ତି । ସେ ପରମ୍ପରାଗତ ଖଣ୍ଡଯୁଗୀୟ ସାମନ୍ତବାଦୀ ଭାଷାର ମାର୍ଗ ଅନୁସରଣ କରିଥିବାରୁ ଆଧୁନିକ ଗ୍ରାମ୍ୟ ଭାଷାର ବହୁଦୂରକୁ ଦୂରେଇ ଯାଇଛନ୍ତି । କିନ୍ତୁ ଅନ୍ୟ ପକ୍ଷରେ ଦୀନକୃଷ୍ଣଙ୍କ ଭାଷା କାନ୍ତକୋମଳ, ଉଦ୍ଦାମ ଜୀବନୀ ଶକ୍ତିପୂର୍ଣ୍ଣ ଯାହା-ଯୁଗେ ଯୁଗେ ଆଦର୍ଶ ହୋଇ ରହିବ । (ଦୁହିଁଙ୍କର ଧର୍ମଗତ ଓ ରସଗତ ପାର୍ଥକ୍ୟ ଅନ୍ୟ ସ୍ଥାନରେ ସୂଚାଇ ଦିଆ ଯାଇଛି)

ଦେହବନଧାର

ବିଶ୍ୱନାଥ କବିରାଜଙ୍କ ମତରେ "ବାକ୍ୟ ରସାତ୍ମକଂ କାବ୍ୟମ" ଅର୍ଥାତ୍ କାବ୍ୟ ହେଉଛି ରସାତ୍ମକ ବାକ୍ୟ ଏବଂ ଏହା "ରସତେ ଇତି ରସଃ " ବୋଲି ମଧ୍ୟ କୁହାଯାଏ । ଅର୍ଥାତ୍ ଯାହାକୁ ଆସ୍ୱାଦନ କରାଯାଏ ତାହା ରସ । ତେଣୁ ରସ ବ୍ୟାଖ୍ୟା ଯେତେ ପ୍ରକାର ହେଲେମଧ୍ୟ ଏହା ମନର ଆସ୍ୱାଦ ଏବଂ ଏହାହିଁ ଆନନ୍ଦ । ସାହିତ୍ୟ ଜଗତରେ ନବରସର ଧାରଣା କରାଯାଇଛି । ବୈଷ୍ଣବମାନେ ଏହି ନବରସକୁ ସଂପୂର୍ଣ୍ଣ ଗ୍ରହଣ ନକରି ସେମାନେ ମାତ୍ର ପାଞ୍ଚଟି ରସ ଉପରେ ଗୁରୁତ୍ୱ ଆରୋପ କରନ୍ତି । ଏମାନେ ହେଲେ ଶାନ୍ତ (ନାରଦ), ଦାସ୍ୟ (ଉଦ୍ଧବଓ ଅକ୍ରୁର) , ସଖ୍ୟ (ଅର୍ଜୁନ ଓ ସୁଦାମ), ବାତ୍ସଲ୍ୟ (ନନ୍ଦ,ଯଶୋଦା), ଓ ମଧୁର (ଗୋପୀ ଓ ରାଧା) । ଏହି ପଞ୍ଚରସ ହେଉଛି ପାରମାର୍ଥିକ ଆସ୍ୱାଦନ । ରସର ଉପଭୋଗ୍ୟ ବିଷୟ ଶ୍ରୀକୃଷ୍ଣ · । ସେ ଆସ୍ୱାଦ୍ୟ । ଚୈତନ୍ୟଙ୍କ ମତରେ ଶ୍ରୀକୃଷ୍ଣହିଁ ଉପାସ୍ୟ । ଏହା ଗୌଡ଼ୀୟମାନଙ୍କ ମତ । କିନ୍ତୁ ଓଡ଼ିଶୀ ବୈଷ୍ଣବ-

ମାନେ କହନ୍ତି ଶାନ୍ତ ରସହିଁ ଶ୍ରେଷ୍ଠ ଓ ଆସ୍ୱାଦ୍ୟ । ଯାହାହେଉ ଗୌଡ଼ୀୟମାନେ ମଧୁର ରସକୁ ଶ୍ରେଷ୍ଠ ସ୍ଥାନ ଦେଇ କହନ୍ତି—

"ଚାରି ଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର,
ସେ ଭକ୍ତି ଅଟଇ କୋଠ ଗୋପୀ ମାନଙ୍କର"

ଏହି ମଧୁରରସ କ୍ଷେତ୍ର ବିଶେଷରେ ସମାନ ହୋଇ ନପାରନ୍ତି । ସାଂସାରିକ କ୍ଷେତ୍ରରେ ଯେଉଁ ମଧୁର ରସ ଦୃଷ୍ଟିଗୋଚର ହୁଏ ତାହା ବିଶୁଦ୍ଧ ନୁହେଁ । ଏହା ଅହଂଭାବ ସମ୍ପନ୍ନ । ଏଥିରେ ସ୍ୱାର୍ଥର ସତ୍ତା ଥିବାରୁ ବିଶୁଦ୍ଧ ହୋଇ ପାରେନା । ତେଣୁ ଏହା ପ୍ରାପଞ୍ଚିକ ମଧୁର ବା ଶୃଙ୍ଗାର ରସ । ଅପ୍ରାକୃତ ରସ ଉପଲବ୍ଧିହିଁ ଗୌଡ଼ୀୟ ବୈଷ୍ଣବମାନଙ୍କର ମୂଳ ଲକ୍ଷ୍ୟ । ଏହାକୁ ନିର୍ଗୁଣା ଭକ୍ତି ବା ନିଷ୍କାମ ଭକ୍ତି କହନ୍ତି । ଭଗବାନ କୃଷ୍ଣଙ୍କର କୃପାପାତ୍ରହୋଇ ଅହଙ୍କାର ବିମୁକ୍ତ ଭକ୍ତ ମନରୁ ମୋକ୍ଷଲାଭର ବାସନା ପରିତ୍ୟାଗ ଉତ୍ତାରେ ତାର ସୁଧାଭକ୍ତି ଜାଗ୍ରତ ହୁଏ । ରସ ଶାସ୍ତ୍ରରେ ଦାସ୍ୟ, ସଖ୍ୟ, ରତି ଆଦିକୁ ସ୍ଥାୟୀ ଭାବ କୁହାଯାଏ । ଏହି ସ୍ଥାୟୀଭାବର ସହିତ ବିଭାବ ଅନୁଭାବ ସଞ୍ଚାରି ଭାବର ଯୋଗହେତୁ ରତିରସରେ ପରିଣତ ହୁଏ ଓ ଭକ୍ତି ଭକ୍ତିରସରେ ପରିଣତ ହୁଏ ।

ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣିକୁ ରସ ଦୃଷ୍ଟିରୁ ବିଚାର କରିବସିଲେ ଜଣାଯାଏ ଯେ, ଉଭୟ ବାକ୍ୟରେ ଶୃଙ୍ଗାର ବା ମଧୁର ରସିକୁ ମୁଖ୍ୟ ରସ ରୂପେ ଗ୍ରହଣ କରି ନଆଯାଇଛି । ଏହି ଶୃଙ୍ଗାର କେତେକ ସ୍ଥାନରେ ଅଶ୍ଳୀଳ ଭାବରେ ଦୋଷଯୁକ୍ତ । କାବ୍ୟର ମହାଂଶରେ ଏହି ଶୃଙ୍ଗାରରସର ଆଭାସ ମିଳିଥାଏ । ଗ୍ରୀଷ୍ମକାଳ କାନ୍ତ ଘନରସ ବନ୍ଧୁନେ ବରିବଣୀକୁଳ ଭଳି ଦିଶନ୍ତି । କୁସୁମ

ସମସ୍ତ ହେବା ମାତ୍ରେ କାମଦେବ ଦୂତ ମହାମତ୍ତ ହେବା ସଙ୍ଗେ ସଙ୍ଗେ କନ୍ଦର୍ପ ଦର୍ପ ବଢ଼ିଯାଏ । ବର୍ଷାକାଳରେ କୁଳଟା ପ୍ରାୟେ ନଘା ବଢ଼ନ୍ତ ପ୍ରଭୃତି ବର୍ଣ୍ଣନାରେ ଶୃଙ୍ଗାର ପୁଷ୍ଟ ଦିଆଯାଇଛି । ଅଭିମନ୍ୟୁଙ୍କ କୃଷ୍ଣ ସେହିଭଳି ବାଲ୍ୟକାଳରୁ ଗୋପୀଙ୍କ ଗାୟରେ କଣ୍ଡୂର ବୋଳନ୍ତି । ଉଭୟ କାବ୍ୟକୁ ପାଠକଲେ କବି ଦ୍ୱୟ ଶୃଙ୍ଗାର ରସରେ ସନ୍ତରଣ କଲାଭଳି ମନେ ହୁଏ । ତେଣୁ ଦୁଇ କାବ୍ୟ ଶୃଙ୍ଗାରମୟ ଭଳି ଜଣାପଡ଼େ ।

ଘନକୃଷ୍ଣ ସ୍ୱୀୟ କାବ୍ୟର ନାମ ରସକଲ୍ଲୋଳ ରଖି ଏହି ନାମର ସାର୍ଥକତା ଦୃଷ୍ଟିରୁ ନବରସର ଅବତାରଣା କରିଛନ୍ତି । ଶ୍ରୀକୃଷ୍ଣ ରସର ଆଶ୍ରୟ ହେତୁ ତାଙ୍କର ବାଲ୍ୟ, ପୌଗଣ୍ଡ, କୈଶୋର ଓ ଯୌବନ ବର୍ଣ୍ଣନାରେ ଶୃଙ୍ଗାର ରସ ବ୍ୟତୀତ ଅନ୍ୟାନ୍ୟ ରସର ଉଲ୍ଲେଖ କରାଯାଇଛି । ତେଣୁ ଶୃଙ୍ଗାର ବ୍ୟତୀତ ବାତ୍ସଲ୍ୟ, ଦାସ୍ୟ, ହାସ୍ୟ, ବୀର, ଭୟାନକ ଓ କରୁଣ ରସ ପ୍ରଭୃତିର ବିକାଶ ପରିଦୃଷ୍ଟ ହୁଏ । ଏହା ହୋଇଥିଲେ ମଧ୍ୟ କୌଣସି ବିଶେଷ ସ୍ଫୁଟନ ରସକଲ୍ଲୋଳରେ ଦେଖାଯାଏ ନାହିଁ । କିନ୍ତୁ ବିଦଗ୍ଧ ଚିନ୍ତାମଣିରେ କବି ବିଦଗ୍ଧ କୃଷ୍ଣଙ୍କୁ ବର୍ଣ୍ଣନା କରିବାକୁଯାଇ କେବଳ ଶୃଙ୍ଗାରରସକୁ ମୁଖ୍ୟତଃ ସ୍ଥାନ ଦେଇଛନ୍ତି । ତେଣୁ ଶୃଙ୍ଗାର ରସର ବିଶେଷ ବ୍ୟାଖ୍ୟା କରିବାକୁଯାଇ ଅନ୍ୟ କୌଣସି ରସକୁ ଅବତାରଣା କରିବାକୁ ଅବସର ପାଇ ନାହାନ୍ତି କିମ୍ବା ଭୁଲି ଯାଇଛନ୍ତି । ଅବଶ୍ୟ କଳାମାଣିକ ଛାନ୍ଦରେ ବାତ୍ସଲ୍ୟ ରସର ଯେଉଁ ହୃଦୟସ୍ପର୍ଶି ବର୍ଣ୍ଣନା ତାହା ଭୁଲି ହେବାର ନୁହେଁ । ମାତୃ ହୃଦୟର ବାସ୍ତବ ଧର୍ମୀ ସ୍ୱଭାବ ସୁନ୍ଦର ବର୍ଣ୍ଣନା କ୍ୱଚିତ ଅନ୍ୟାନ୍ୟ କାବ୍ୟରେ ଦୃଷ୍ଟି ଗୋଚର ହୁଏ ।

"ନିଧନ ସଂଖାଳ ମୋର ଦରିଦ୍ର ପସରା,
ଅନ୍ଧର ଲଗୁଡ଼ ବାବୁ ହୃଦ ରତ୍ନହାର ।
କଳାମାଣିକରେ "

ଅଭିମନ୍ୟୁଙ୍କର ବନ୍ଧୁବିନୋଦର ତିରୋଧାନ ପରେ ଆଜିବି ଉତ୍କଳର ବାୟୁମଣ୍ଡଳକୁ ପୁଣି ବିଚ୍ଛେଦ ବିଧୂରା କେତେ ଓଡ଼ିଶୀ ଯଶୋଦା ଦରଦଭରା କଣ୍ଠରେ ବାହୁନି ବାହୁନି ମୁଖରିତ କରୁଛନ୍ତି । ଏତଦ୍ ବ୍ୟତୀତ "ରାଧା ଧନ ସଖୀକର" କିମ୍ବା 'ଶ୍ରୀରାଧା ବାଉଳୀ' ଛାନ୍ଦରେ ଯେଉଁ କରୁଣ ରସର ଚିତ୍ରଣ କରାଯାଇଛି ତାହା ମଧ୍ୟ ହୃଦୟ ସ୍ପର୍ଶୀ । ଏହି ଭଳି କେତୋଟି ଛାନ୍ଦକୁ ଛାଡ଼ିଦେଲେ ସମଗ୍ର ବିଦଗ୍‌ଧ ଚିନ୍ତାମଣି ଶୃଙ୍ଗାର ରସରେ ରସାଣିତ । ଏହା ବିଷୟତଃ ଓ ତତ୍ତ୍ୱତ ଉଚ୍ଚକୋଟୀର ।

ଅଭିମନ୍ୟୁ କୃଷ୍ଣ ରାଧାଙ୍କ ଜରିଆରେ ଅପ୍ରାକୃତ ପ୍ରେମ ବ୍ୟାଖ୍ୟା କରିବାକୁ ଯାଇ ତିନୋଟି (୪୨,୫୯,୮୪,) ଛାନ୍ଦ ବ୍ୟୟ କରିଛନ୍ତି । ମନୋବିଜ୍ଞାନ ଦୃଷ୍ଟିରୁ, ବୈଷ୍ଣବୀୟ ଦର୍ଶନ ଦୃଷ୍ଟିରୁ ତାହା ଓ ଭୂପତି ପଣ୍ଡିତଙ୍କ ପ୍ରେମ ପଞ୍ଚାମୃତ, ଓଡ଼ିଆ ବୈଷ୍ଣବ କାବ୍ୟ ମାନଙ୍କ ମଧ୍ୟରେ ଗୋଟିଏ ଗୋଟିଏ ପ୍ରାମାଣିକ ଗ୍ରନ୍ଥ । ରସକଲ୍ଲୋଳରେ ଯେ ପ୍ରେମ ବର୍ଣ୍ଣନା ବା ଶୃଙ୍ଗାରରସର ଅବତାରଣା କରାଯାଇନାହିଁ, ତାହା ନୁହେଁ, ସେ ଶୃଙ୍ଗାରରସର ଯେଉଁ ବିଶେଷ ବ୍ୟାଖ୍ୟା କରିଛନ୍ତି ତାହା ତେତେ ପ୍ରଭାବଶାଳୀ ନୁହେଁ । କିନ୍ତୁ ଦୀନକୃଷ୍ଣ ଅନ୍ୟାନ୍ୟ ରସର ସମାବେଶ ଯେପରି ଭାବରେ କରିଛନ୍ତି, ଅଭିମନ୍ୟୁଙ୍କୁ ସେ ସ୍ଥଳରେ ନିଶ୍ଚୟ ମାନିବାକୁ ପଡ଼ିବ । ଗୋଷ୍ଠଲୀଳାରେ ଗୋପାଳ ବାଳକଙ୍କ ସହିତ କୃଷ୍ଣଙ୍କର ଯେଉଁ ଉତ୍ସବ, ତାହା ସଖ୍ୟରସର ଏକ ମଧୁର ସୃଷ୍ଟି ।

"କେତେବେଳେ ବାହୁ ଯୁଦ୍ଧକରି କେହୁ
ଭିଡିବେ ହୁଅନ୍ତି ଧରାଧରି
କେତେବେଳେ ଫଳ ସମରେ ଛଅଁଳ
କେତେବେଳେ ଆଖି ବୁଜାଳି ।
କେତେବେଳରେ କୃଷ୍ଣ ହୁଅନ୍ତି ନରପତି
କରେ ପୁଷ୍ପଛତି ଧରି ସଖାପନ୍ତି ମଣିମା ମଣିମା ବୋଲନ୍ତି ।"

ଗୋପୀମାନଙ୍କର ତଥା ଯଶୋଦାଙ୍କର କୃଷ୍ଣଙ୍କ ପ୍ରତି ଯେଉଁ ବାତ୍ସଲ୍ୟ ସ୍ନେହ ରସକଲ୍ଲୋଳରୁ ତାହା ମଧ୍ୟ ଭୁଲି ହେବାର ନୁହେଁ । କୃଷ୍ଣ ଯେତେବେଳେ ବାଳ ଗୋପାଳ ଅବସ୍ଥାରେ କରଜାନୁରେ ଗମନ କରୁଥିଲେ, ଧୂଳିବୋଳି ହେଉଥିଲେ, ଗୋପୀମାନେ "କରଙ୍କିର ହୋଇ ହସି କଉତୁକରେ ଘେନ ଯାଉଥିଲେ ।" କହୁଥିଲେ—

"କାହାଁକି କାହ୍ନୁ ଥାଅ ଗୋ ଧନ,
କେ କେତେ ତୁମ୍ଭଙ୍କୁ କରାଏ ମାନ'
କଣ୍ଠର ଅମୂଲ୍ୟ ମର୍କତମାଳୀ,
କୋଟି ଦୁଃଖହରା ସୁଖ ସଖାଳି ।"

ପୁତନା ବିନାଶ ସମୟରେ ଯେଉଁ ବୀଭତ୍ସ ବା କୁତ୍ସିତ ରସ ସୃଷ୍ଟି ହୋଇଛି ତାହା ମଧ୍ୟ ଲକ୍ଷ୍ୟ କରିବାର କଥା । କୃଷ୍ଣଙ୍କ ଜନ୍ମର କଛୁଦିନ ପରେ "କ୍ରୁର କର୍ମିଣୀ ପୁତନା ପରବେଶ" ହୋଇ—

"କରିବର ଗତି ପ୍ରାପ୍ତ ଗତି ଭଙ୍ଗି
କି ସେ ମନମଥ ମହାନଦୀ ତରଙ୍ଗୀ,
କେତେବେଳେ କଣିଆଇ ଗୃହେଁ ବାଳୀ,
କାଖେଧରି ଅଛି ବିଧିଲଜ୍ଜୁ ଥାଳି ।"

ଏତଦ୍‌ବ୍ୟତୀତ କ୍ୟାତ୍ୟାୟନୀର ଆଗମନ ବର୍ଣ୍ଣନା କରିବାକୁ ଯାଇ କବି ହାସ୍ୟରସର ଏକ ତରଙ୍ଗ ସୃଷ୍ଟି କରିଛନ୍ତି ।

“କୃଷ୍ଣ ନାମକରଣରେ ହୋଇ ତୋଷ,
କାହ୍ନୁଁ କାତ୍ୟାୟନୀ ହୋଏ ପରବେଶ,
କେଶ ଯମୁନା ଗଙ୍ଗା ମେଳନ ପ୍ରାୟେ
କୁଚ ଲମ୍ବି ପଡ଼ିଅଛି ନାଭି ଯାଏ ।”

କୁବଳୟା ହସ୍ତୀର ନିଧନ, ଚାଣୁର ବଧ ପ୍ରଭୃତି ବର୍ଣ୍ଣନାରେ କବି ବୀରରସର ମଧ୍ୟ ସାମାନ୍ୟ ସୂଚନା ପ୍ରଦାନ କରିଛନ୍ତି । ଯେତେବେଳେ—

“କୋପେ ମାଇଲ୍ ମାତଙ୍ଗ ଦନ୍ତ”,

“କୃଷ୍ଣ କଣ୍ଠୀର ପ୍ରାପ୍ତ ଗଣ୍ଡକରି,
କରେ ଗୁପୁଡ଼େ ମାଇଲେ ହରି
କଣ୍ଠୀବର ଲାଞ୍ଜ ଧରି ଦେବରାଜ ପଛକୁ ନେଲେ ଓଟାରି ସେ ।”

ବିଦଗ୍ଧ ଚିନ୍ତାମଣିରେ ଏସବୁ ରସର ବର୍ଣ୍ଣନା ପରିଲକ୍ଷିତ ହୁଏନା । ମାତ୍ର ଶୃଙ୍ଗାରରସରେ ବିଦଗ୍ଧ ଚିନ୍ତାମଣି ପୂର୍ଣ୍ଣତା ଲାଭ କରିଛି । ଏଥିରେ ପୂର୍ବରାଗର ବର୍ଣ୍ଣନା ଶୃଙ୍ଗାର ଶ୍ରିତ ହେଲେ ମଧ୍ୟ କରୁଣ ରସାତ୍ମକ ଏବଂ ରାଧାକୃଷ୍ଣଙ୍କର ସ୍ୱପ୍ନର ମିଳନ, ବିରହ ଅତି ନିପୁଣତାର ସହ ସଂଯୋଜିତ । ମିଳନର ପୂର୍ବରାଗ ଓ ବିଚ୍ଛେଦର ପରଭାବ ହୃଦୟକୁ କରୁଣରସରେ ରସାଣିତ କରେ । ଏଥିରେ ଶୃଙ୍ଗାରରସ ପରିପ୍ରକାଶ ଲାଭକରିଛି କେବଳ ବିଚ୍ଛେଦର ଦରଦରେ । କୃଷ୍ଣ ଅତି ଦୀନେ ଦୂତିକାକୁ ଦୀନ ପ୍ରାଣବନ୍ଧୁ ରୀତି ଯେତେବେଳେ ପଚାରିଛନ୍ତି, ସେତେବେଳେ ଦିବାରାତି ମତି ବିହ୍ୱଳତା

ରାଧା ବିରହାବସ୍ଥା ବର୍ଣ୍ଣନାକରି କବି ଏକ କରୁଣରସର ଉତ୍ସ ସୃଷ୍ଟି କରିଛନ୍ତି । ପ୍ରେମାନୁରାଗିଣୀ ଶ୍ୟାମ ବିରହକାତରା ପ୍ରେମାଧୀମା ରାମା କୃଷ୍ଣଙ୍କ ବିରହରେ—

"ଦେଖି ତମାଳକୁ ବସ୍ତୁର କୋଳକୁ
ସଜ ହେଉଥାଇ ବାହୁ ଯୁଗ,
ଶ୍ୟାମ ସୁବାସରେ ଆଶ ମାନସରେ
କଳାବସ୍ତି ସଙ୍ଗେ ଅନୁରାଗ ।
ରସ ଶେଖର ହେ, ଭୂଷଣ ମାଳେନ୍ଦ୍ର-ମଣିବର
ବସି ରାମାବର ଫିଟାଇ କବେର
ଦେଖୁଥାଇ ଥୋଇ ହୃଦେ ତାର ।"

ଏଭଳି କରୁଣ ରସାତ୍ମକ ଶୃଙ୍ଗାର ପାଠକର ମନକୁ ଆର୍ଦ୍ର କରେ, ହୃଦୟରେ ସମବେଦନା ଜାଗେ । ତେଣୁ ଅଭିମନ୍ୟୁ ବିପ୍ରଲମ୍ଭ ଶୃଙ୍ଗାର ସୃଷ୍ଟି କରିବାରେ ଅଦ୍‌ଭୁତ ଶକ୍ତିଶାଳୀ । ବାହ୍ୟ ଓ ଚିତ୍ ପ୍ରକୃତିର ସମନ୍ୱୟକରି ସହଜ ସୁନ୍ଦର ଭାଷାରେ ପ୍ରକାଶ କରିବା କେବଳ ଧୁରୀଣ କବିମାନଙ୍କ ନିକଟରେ ସମ୍ଭବ ।

କିନ୍ତୁ ରସକଲ୍ଲୋଳର ସପ୍ତବିଂଶ ଓ ଚତୁର୍ବିଂଶ ଛାନ୍ଦରେ ଗୋପୀମାନଙ୍କର ଯେଉଁ ଖେଦୋକ୍ତି ଘନକୃଷ୍ଣ ବର୍ଣ୍ଣନା କରିଛନ୍ତି ତାହା ଅଭିମନ୍ୟୁଙ୍କ ଭଳି ହୃଦୟମନ୍ଥନକାରୀ ନୁହେଁ । ଏହା ଅଳଙ୍କାର ସମ୍ମତ ଓ କବିତ୍ୱମୟ ହେଲେମଧ୍ୟ ମର୍ମସ୍ପର୍ଶୀ ନୁହେ । ବିଦଗ୍‌ଧ ଚିନ୍ତାମଣିରେ ହୃଦୟ ମନ୍ଥନକାରୀ ରାଧା ବିଳାପରେ ବେଦନାପୂର୍ଣ୍ଣ କାରୁଣ୍ୟ ରସକଲ୍ଲୋଳର ଗୋପୀବିଳାପରେ କାହିଁ ? ବରଂ ସେଗୁଡ଼ିକ କରୁଣ ରସ ସୃଷ୍ଟି ନକରି ବ୍ୟଙ୍ଗାତ୍ମକ ହାସ୍ୟରସ

ସୃଷ୍ଟି କରନ୍ତି । ଗୋଟିଏ ଉଦାହରଣରୁ ଏହାର ଯଥେଷ୍ଟ ସୂଚନା ମିଳିବ । ଗୋପିମାନଙ୍କୁ ବିରହ ବେଦନା ଏପରି ବାଧୁଛି ଯେ ସେଥିରୁ ରକ୍ଷା ପାଇବା ପାଇଁ—

"କୋମଳ ପଦ୍ମ ହୋଇଛି କଉଡ଼ି ।
କେ କେତେ ଅବା ଆସୁଛନ୍ତି ଲୋଡ଼ି ।
କର୍ପୂର ଚନ୍ଦନକୁ ଆଗ ହୋଇ ।
କପର୍ଦ୍ଦିମାନ ପଡ଼ିଅଛି ଯାଇ ।
କୁତ୍ସିତ ଦ୍ରବ୍ୟ ଗନ୍ଧ ବେଣାମୂଳ ।
କର୍ମିକୁ ସେହି ହୋଇଛି ଦୁର୍ମୂଲ୍ୟ ।"

ଏଥିରୁ ବୁଝାଯାଏ ଯେ ବିରହର ଉପଚାର ପାଇଁ ଦୋକାନ ମାନଙ୍କରେ ଗୋପିକାମାନଙ୍କର ଏତେ ଭିଡ଼ ଯେ କାଳେ ନମିଳିବ ସେଥିପାଇଁ ଅଗ୍ରୀମ ମୂଲ୍ୟ ଦିଆଯାଇଅଛି । ଏହାଠାରୁ ହାସ୍ୟକର କଥା ଆଉ କଣ ହୋଇପାରେ ? ତେଣୁ ଶୃଙ୍ଗାରମିଶ୍ରିତ କରୁଣରସ ସୃଷ୍ଟି ରସକଲ୍ଲୋଳରେ ଅନେକାଂଶରେ ବ୍ୟର୍ଥ ହୋଇଛି । ଏବଂ ବିଦଗ୍ଧ ଚିନ୍ତାମଣିରେ "କଳାବିଳାସ ବିଗ୍ଧାତ୍ମା ବିଦଗ୍ଧ ଇତି କୀର୍ତ୍ତ୍ୟତେ"ର ସାର୍ଥକତା ପ୍ରତିପାଦନ କରିବାହିଁ କବିଙ୍କର ମୁଖ୍ୟ ଲକ୍ଷ୍ୟ ।

## ଗୋପୀଭାବ ଓ ରାଧାଭାବ

ସଂସ୍କୃତ 'ଗୁପ୍' ଧାତୁରୁ ଗୋପୀ ଶବ୍ଦର ଉତ୍ପତ୍ତି । ଏହାର ଅର୍ଥ—ଯେ ରାଧାକୃଷ୍ଣଙ୍କୁ ରକ୍ଷା କରେ ଅର୍ଥାତ୍ ଯେଉଁମାନେ ମଧୁର ଭକ୍ତି ସାଧନ କରିବାରେ ସହାୟତା କରନ୍ତି ଓ ଯେଉଁମାନେ

ମହାଭାବ ରକ୍ଷା କରନ୍ତି । ସେଥିପାଇଁ ସମଗ୍ର ବୈଷ୍ଣବ ସାହିତ୍ୟରେ ଗୋପୀମାନଙ୍କର ପ୍ରେମ ପ୍ରଣୟାଦିର ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ । 'କାନ୍ତା ଘନ ରସ'ର ଆସ୍ୱାଦାନପାଇଁ ବହୁ ଗୋପୀର ଆବଶ୍ୟକତା ଉପଲବ୍ଧି କରି ଏମାନଙ୍କର ସମାବେଶ କରାଯାଇଛି ଓ ଏମାନଙ୍କୁ ରାଧାଙ୍କର 'କାୟ ବ୍ୟୁହ ରୂପ' ବୋଲି କଳ୍ପନା କରାଯାଇଛି ।

"ଆକାଶ ସ୍ୱରୂପ ଭେଦେ ବ୍ରଜ ଦେବୀଗଣ
କାୟ ବ୍ୟୁହ ରୂପ ତାଁର ରସେର କାରଣ
ବହୁକାନ୍ତା ବିନାନହେ ରସେର ଉଲ୍ଲାସ
ଲୀଳାର ସହାୟେ ଲଗି ବହୁତ ପ୍ରକାଶ" (ଚୈ.ଚ.ମୃ)

ଏଥିପାଇଁ ଗୌଡ଼ୀୟ ବୈଷ୍ଣବମାନେ ରାଧାଙ୍କୁ ଶ୍ରେଷ୍ଠ ବୋଲି କଳ୍ପନା କରୁଛନ୍ତି । ରାଧାକୃଷ୍ଣଙ୍କର ମଧୁରମିଳନରେହିଁ ଏମାନଙ୍କର ଆନନ୍ଦ । ତେଣୁ ସେମାନଙ୍କର ମିଳନ କରାଇ ସୁଖ ସଂପାଦନ ହିଁ ସେମାନଙ୍କ ଜୀବନର ଶ୍ରେଷ୍ଠ ସାର୍ଥକତା ।

"କୃଷ୍ଣସହ ରାଧିକାର ଯେ ଲୀଳା କରାୟ
ନିଜ କେଳି ହୈତେତାହେ କୋଟି ସୁଖ ପ୍ରାୟ (ଚୈ.ଚ.ମୃ)

କେବଳ ଏତିକି ନୁହଁ, ଏମାନଙ୍କର ବେଶ ବିରଚନ ମଧ୍ୟ ସେହି କୃଷ୍ଣତୃପ୍ତି ଉଦ୍ଦେଶ୍ୟରେ । ଏଥିପାଇଁ ଗୋପୀଭାବରେ ଭାବିତ ହୋଇ ଗୌଡ଼ୀୟ ବୈଷ୍ଣବଭକ୍ତ କୃଷ୍ଣଙ୍କୁ ନିଜର କରିବାପାଇଁ ସାଧନ କରେ । ଏହି ଗୋପୀଭାବକୁ କାନ୍ତାଭାବ, ସଖୀଭାବ, ଦୂତୀଭାବ ମଧ୍ୟ ବୋଲାଯାଏ ।

ମଧୁର ରସରେ ଏମାନେ ମୁଗ୍‌ଧ, ବହ୍ୱଳ, ଉନ୍ମତ୍ତ ହେବାକୁ ସବୁବେଳେ ଇଚ୍ଛା ପ୍ରକାଶ କରନ୍ତି । ସ୍ୱକୀୟା ପ୍ରେମରେ ସ୍ୱାର୍ଥ ଜଡ଼ିତ ଥିବାରୁ ଏହା ଏତେ ଉନ୍ମାଦକର ନୁହେଁ, ତେଣୁ ପରକୀୟା ପ୍ରୀତିରେ ସେମାନେ ତନ୍ମୟ ହୁଅନ୍ତି । ରାଧା ମଧୁର ରସର ଘନୀଭୂତ ବିଗ୍ରହ ହୋଇଥିବାରୁ ଓ ପରକୀୟା ନାୟିକା ଦୃଷ୍ଟିରୁ ସମଗ୍ର ଗୌଡ଼ୀୟ ବୈଷ୍ଣବର ଉପାସ୍ୟ ।

ଭଗବାନ ଯେଉଁ ଶକ୍ତି ଦ୍ୱାରା ସତ୍ତାକୁ ଧାରଣ କରନ୍ତି ଓ ଅପର ସକଳ ବସ୍ତୁକୁ ଧାରଣ କରାନ୍ତି ସେହି ଶକ୍ତିର ନାମ ସନ୍ଧିନୀ । ଭଗବାନ୍ ସ୍ୱୟଂ ଜ୍ଞାନ ସ୍ୱରୂପ ହୋଇ ଯେଉଁ ଶକ୍ତିଦ୍ୱାରା ସ୍ୱୟଂ ଜ୍ଞାନର ଆଶ୍ରୟ ହୁଅନ୍ତି ଏବଂ ଜୀବ ସମୂହକୁ ଜ୍ଞାନର ଆଶ୍ରୟ କରାନ୍ତି ସେହି ଶକ୍ତିର ନାମ ସମ୍ବିତ । ଭଗବାନ ସ୍ୱୟଂ ଆନନ୍ଦ ସ୍ୱରୂପ ହୋଇ ଯେଉଁ ଶକ୍ତିଦ୍ୱାରା ସ୍ୱରୂପ ଭୂତ ଆନନ୍ଦର ସ୍ୱୟଂ ଅନୁଭବ କରନ୍ତି ଓ ଅନ୍ୟ ସମସ୍ତଙ୍କୁ ଅନୁଭବ କରାନ୍ତି ସେହି ଶକ୍ତିର ନାମ ହ୍ଲାଦିନୀ ଶକ୍ତି । ତେଣୁ ଚୈତନ୍ୟ ଚରିତାମୃତରେ ଅଛି—

"ଆନନ୍ଦାଂଶି, ହ୍ଲାଦିନୀ, ସଦଂଶେ,
ଚିଦଂସେ ସମ୍ବିତ ଯାଜ୍ଞାନକରି ମାନି
କୃଷ୍ଣକେ ଆହ୍ଲାଦେ—ତାତେ ନାମ ହ୍ଲାଦିନୀ,
ସେହି ଶକ୍ତି ଦ୍ୱାରେ ସୁଖ ଆସ୍ୱାଦେ ଆପନ ।
ସୁଖ ରୂପ କୃଷ୍ଣକରେ ସୁଖ ଅସ୍ୱାଦନ,
ଭକ୍ତଗଣେ ସୁଖ ଦିତେ ହ୍ଲାଦିନୀ କାରଣ,
ହ୍ଲାଦିନୀର ସାର ଅଂଶ ତାର ପ୍ରେମ ନାମ,
ଆନନ୍ଦ ଚିନ୍ମୟ ରସ ପ୍ରେମରେ ଆଖ୍ୟାନ ।

ପ୍ରେମରେ ପରମସାର ମହାଭାବ ଜାନ,
ସେହି ମହାଭାବ ସ୍ୱରୂପ ରାଧା ଠାକୁରାନ
ରାଧା ହେଉଛନ୍ତି କୃଷ୍ଣଙ୍କର ହ୍ଲାଦିନୀ ବା ଆନନ୍ଦମୟୀ ଶକ୍ତି ।
ତେଣୁ ରାଧା ପୂର୍ଣ୍ଣଶକ୍ତି କୃଷ୍ଣ ପର୍ଣ୍ଣ ଶକ୍ତିମାନ,
ଦୁଇବସ୍ତୁ ଭେଦ ନାହିଁ, ଶାସ୍ତ୍ର ପରଧାନ ",

ରାଧା କୃଷ୍ଣଗତ ପ୍ରାଣ ଓ ତାଙ୍କର ଅନ୍ତର ବାହାର କୃଷ୍ଣମୟ ଥିଲା । ସେ ସଂପୂର୍ଣ୍ଣରୂପେ ନିଜକୁ କୃଷ୍ଣଙ୍କ ନିକଟରେ ସମର୍ପଣ କରିଥିଲେ । ଏଥିରେ ଆତ୍ମତୃପ୍ତିର ଲେଶମାତ୍ର ଚିହ୍ନ ପର୍ଯ୍ୟନ୍ତ ନଥିଲା । ସେ ହେଉଛନ୍ତି "ମହାଭାବ ସ୍ୱରୂପିଣୀ ।" ତେଣୁ ରାଧାକୃଷ୍ଣଙ୍କର ବିଳାସ ମଧ୍ୟରେ ପୁରୁଷ ବା ରମଣୀ ଏ ପ୍ରକାର ଭେଦଭାବ ନଥାଏ । ରାଧାଙ୍କର ପ୍ରେମଦ୍ୱାରା ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟର ବିକାଶ ହୁଏ ।

ଗୌଡ଼ୀୟ ବୈଷ୍ଣବମାନଙ୍କ ମତରେ ରାଧା ପ୍ରେମ ହିଁ କାମ୍ୟ ବା ସର୍ବସାଧ୍ୟ ଶିରୋମଣି । ଏହି ସାଧ୍ୟବସ୍ତୁକୁ ସାଧନା ବ୍ୟତୀତ ଲାଭ କରାଯାଏନା । କିନ୍ତୁ ଏହା ଲାଭ କରିବା ଏତେ ସହଜ ନୁହେଁ । ଗୌଡ଼ୀୟ ବୈଷ୍ଣବମାନେ ଗୋପୀଭାବ ବା ସଖୀଭାବ ଗ୍ରହଣକରି ସାଧନାର ଶୀର୍ଷସ୍ଥାନରେ ଉପନୀତ ହୁଅନ୍ତି । ରାଧାର ସଖୀ ସ୍ଥାନୀୟା ଗୋପୀଗଣ ନ୍ୟାୟରେ ସହଜ ସରଳ ଭାବରେ ତନୁ ମନ ପ୍ରାଣ ଢ଼ାଳିଦେଇ ଶ୍ରୀକୃଷ୍ଣଙ୍କର ସେବା କରିବାହିଁ ସଖୀଭାବ । ଏହି ରୂପ ସାଧନାକୁ ରାଗାନୁଗା ଭଜନ କୁହାଯାଏ ।

ବୈଷ୍ଣବ ସାଧନର ଏହି ଗୋପୀ ତଥା ରାଧାଭାବ ରସକଲ୍ଲୋଳ, ବିଦଗ୍ଧ ଚିନ୍ତାମଣି, ପ୍ରେମ ପଞ୍ଚାମୃତ, ମଥୁରା ମଙ୍ଗଳ ପ୍ରଭୃତି କାବ୍ୟରେ ଅତି ବିସ୍ତାରିତ ଭାବେ ବର୍ଣ୍ଣନା କରାଯାଇଛି । ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ରେ କୃଷ୍ଣଙ୍କର ବାଲ୍ୟ, ପୌଗଣ୍ଡ, କୈଶୋର, ଯୌବନ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ଗୋପୀଭାବର ସମାବେଶ ସୁନ୍ଦର ଭାବରେ କରାଯାଇଛି । ଦୀନକୃଷ୍ଣ କାବ୍ୟର ତୃତୀୟ ଛାନ୍ଦରୁ ଅର୍ଥାତ୍ କୃଷ୍ଣଙ୍କର ଜନ୍ମକାଳରୁ ଏହା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ପୁଣି ପଞ୍ଚମ ଛାନ୍ଦରେ ଏହାପରି ମୂଳରୁ ଚୂଳ ପର୍ଯ୍ୟନ୍ତ ଗୋପୀଭାବର ଅବତାରଣା ମୁଖ୍ୟ ସ୍ଥାନ ଲାଭ କରିଛି । ଗୋପୀମାନଙ୍କର କୃଷ୍ଣ ରୂପ ବର୍ଣ୍ଣନା ତାଙ୍କ ସହିତ ଗୂଢ଼ାର୍ଥପୂର୍ଣ୍ଣ ଆଳାପ ଆଲୋଚନା, ରାସ ରଚନା ଓ ଉଦ୍ଧବଙ୍କ ନିକଟରେ ନିଜର ବିରହ ବେଦନା ବର୍ଣ୍ଣନାରେ ରସକଲ୍ଲୋଳ ପୂର୍ଣ୍ଣତା ଲାଭ କରିଛି । କେତେବେଳେ ଗୋପିକାଙ୍କୁ—

"କୃଷ୍ଣ ହସି ବୋଇଲେ ମୁଁ ପାଇଲି ପାଇଲି,
କି କହିବ ଅଧିକ ତୋ କୋପୂର ହୋଇଲି,
କାମିନୀ ବୋଇଲା ମୁହିଁ ତୁମ୍ଭ ଦାସୀ ସିନା,
କରିଥିବ କୃପା ମୋତେ ଲୁଚଯାଇ କିନା ।"

ରସକଲ୍ଲୋଳର ଶେଷ ଛାନ୍ଦ ମାନଙ୍କରେ ଉଦ୍ଧବଙ୍କ ନିକଟରେ ସେମାନଙ୍କ ବିରହାବସ୍ଥା ବର୍ଣ୍ଣନାରେ କହିଛନ୍ତି—

"କୁସୁମ ମିଳିନ୍ଦ ହରି ମକରନ୍ଦ ନାମ ବହେ ମଧୁକର
କୃଷ୍ଣ ଗୋପୀନାଥ ବୋଲାନ୍ତି ଅନାଥ
ହୋଇଲେ ଗୋପୀ ନିରସ ସେ
କାହିଁ ଶୁଣିଛୁ ଏ ବିପରୀତ ?
କେତେ କହିବା ଏଥି ଚରିତ ସେ ।"

ଏହିପରି ବହୁପଦ ଉଦ୍ଧାର କରାଯାଇପାରେ । ଖାଲି ଚୈତନ୍ୟଙ୍କ ନୁହେଁ, କୃଷ୍ଣଙ୍କର ସାମୟିକ ବିଚ୍ଛେଦରେ କେଉଁ ଗୋପୀର କଦମ୍ବ ରୋମାଞ୍ଚ ଜାତ ହୋଇଛି, କେ କାଦମ୍ବିନୀ କାଳ କୋକିଳ ମତ ହୋଇଛି, କେ ବରଷାକାଳ ପ୍ରାପ୍ତ କମଳ ନୟନ ଲୁବ୍ଧ ଡାକୁଛି, କାହାର କଳେବର କାମ ନୃପତିର ରଙ୍ଗଭୂମି ହୋଇଛି । ଏଣୁ ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ଦାନକୃଷ୍ଣଙ୍କ ରସକଲ୍ଲୋଳରେ ଗୋପୀଭାବର ଉତ୍କର୍ଷ ସମଧିକ ଭାବରେ ପ୍ରକାଶିତ ହୋଇଛି । ସେଥିପାଇଁ—

"କହେ ଦାନକୃଷ୍ଣ ହୋଇ ମହାତୃଷ୍ଣ ଗୋପୀ ଗୋପୀନାଥ କଥା"

ସେହି ଦୃଷ୍ଟିରୁ ବିଚାରକରି ବସିଲେ ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିରେ ମଧ୍ୟ ଗୋପୀଭାବର ସୁନ୍ଦର ଦୃଷ୍ଟାନ୍ତମାନ ରହିଛି । କାବ୍ୟର ପ୍ରଥମ ଛାନ୍ଦରେ ଗୋପୀଭାବ ପ୍ରଚାର କରିବାକୁଯାଇ ଲେଖିଛନ୍ତି--

"ଔଷଧି ଶାନନହେ ମାଗୁଛି ପଦଧରି,
ଓ କରିବ ଆଳେ ଦାସୀ ଡାକିବେ କଶୋରୀ ।"

କାବ୍ୟରେ ଆଦିପର୍ବରେ ଏଭଳି ସୂଚନା ଥିଲେ ମଧ୍ୟ କବି ମୁଖ୍ୟତଃ ରାଧାଭାବ ପ୍ରକାଶ କରିବାରେ ବିଶେଷ ପ୍ରୟାସୀ ହୋଇ ପଡିଛନ୍ତି । ତେଣୁ କାବ୍ୟର ଚତୁର୍ଥ ଛାନ୍ଦରେ ରାଧାଙ୍କର ଜନ୍ମତତ୍ତ୍ୱ ବଖାଣି କ୍ରମେ ରାଧାଭାବର ମହିମା ଗାନ କରିବାରେ କବିଙ୍କର ଲେଖନୀ ମୁଖରହୋଇ ଉଠିଛି । ଏହି ମହାଭାବ ସ୍ୱରୂପିଣୀ,

ସ୍ୱୟଂସିଦ୍ଧା ମହାଭାବବିଦ୍ୟା ରାଧାଭାବ ଲାଗି କବିଚିତ୍ତର ବ୍ୟାକୁଳତା ସର୍ବତ୍ର ପରିପ୍ରକାଶ ଲାଭ କରିଛି । କବି କହିଛନ୍ତି—

"ଆନନ୍ଦେ କୋବିଦ ପିଅ ଏ ରସ ଶ୍ରବଣେ ।
ଆଦିକନ୍ଦ ଶ୍ରୀରାଧିକା ଶ୍ରୀନାମ ଶ୍ରବଣେ"

ଏହିଭଳି ରାଧାକୃଷ୍ଣଙ୍କର ଜନ୍ମ ବୃତ୍ତାନ୍ତ, ସେମାନଙ୍କର ବାଲ୍ୟ ପୌଗଣ୍ଡ, କୈଶୋର, ଯୌବନ ବର୍ଣ୍ଣନା ପରସ୍ପର ପ୍ରତି ଆକର୍ଷଣ । ତେଣୁ ପ୍ରେମର ପୂର୍ବରାଗରେ ଅନୁଚିନ୍ତନ, ସ୍ୱପ୍ନର ମିଳନ, ବିଚ୍ଛେଦରେ ପ୍ରାଣ ଉତ୍ସର୍ଗପାଇଁ ପ୍ରସ୍ତୁତି କରଣ, ରାସ ରଚନ ଇତ୍ୟାଦି ବିଷୟରେ ଭରପୂର ହୋଇ ରହିଛି ।

କବି ଅଭିମନ୍ୟୁ ରାଧାଭାବ ପ୍ରକାଶ କରିବାକୁ ଯାଇ ରାଧା ଓ ବିଶାଖାଙ୍କ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ଯେଉଁ ଭାବ ପ୍ରକାଶ କରିଛନ୍ତି, ତାହା କବିଙ୍କର ସ୍ୱକୀୟ ଅନ୍ତର୍ନିହିତ ରାଧାଭାବ ବ୍ୟତୀତ ଅନ୍ୟ କିଛି ନୁହେଁ । ବିରହ ମିଳନରେ ପ୍ରେମ ଅତି ନିବିଡ଼ ହୋଇଉଠେ । କୃଷ୍ଣଗତ ପ୍ରାଣା, ପରିପୂର୍ଣ୍ଣ-ଅନନ୍ତ-ଆନନ୍ଦ ଶକ୍ତିଭୂତା ରାଧାଙ୍କୁ ମାନବୀୟ ଦୃଷ୍ଟିକୋଣରୁ ବିଚାରକରି କବି ଯେପରି ଭାବରେ ରାଧାଭାବର ମହନୀୟତା ପ୍ରକାଶ କରିଛନ୍ତି, ତାହା ଓଡ଼ିଆ ସାହିତ୍ୟରେ ଅତି ସ୍ମରଣୀୟ ।

## ପ୍ରୀତି ତତ୍ତ୍ୱ

ବୈଷ୍ଣବ ଧର୍ମ ସୁଖବାଦୀ ଓ ଜୀବନବାଦୀ ଏବଂ ବୈଷ୍ଣବ ଧର୍ମାବଲମ୍ବୀମାନେ ସାକାର ଉପାସକ; ପ୍ରବୃତ୍ତି ମାର୍ଗର ସାଧକ । ଏହି

ଗୌଡ଼ୀୟ ବୈଷ୍ଣବମାନେ ମୁକ୍ତି ଗ୍ରହଣ କରନ୍ତି ନାହିଁ । ମୋକ୍ଷ ବାଞ୍ଛାକୁ 'କୈତବ' ବୋଲି କହନ୍ତି । ରାଗାନୁଗା ଭକ୍ତି ବା ଭଗବତ ପ୍ରେମ ଏମାନଙ୍କର ଲକ୍ଷ୍ୟ । ଏହାକୁ ସେମାନେ ପଞ୍ଚମ ପୁରୁଷାର୍ଥ କହନ୍ତି ।

"ପଞ୍ଚମ ପୁରୁଷାର୍ଥ ପ୍ରେମାନନ୍ଦ ସିନ୍ଧୁ
ମୋକ୍ଷାଦି ଆନନ୍ଦ ଯାର ନହେ ଏକ ବିନ୍ଦୁ" (ଚୈ.ଚ. ମୃ)

ବୈଷ୍ଣବ ସାହିତ୍ୟରେ ଏହି ଭଗବତ ପ୍ରେମକୁ ନାନାଭାବରେ ବର୍ଣ୍ଣନା କରାଯାଇଛି । ଗୌଡ଼ୀୟ ବୈଷ୍ଣବମାନେ ପ୍ରେମକୁ ପ୍ରାକୃତ ମନର ଗୋଟିଏ ବୃତ୍ତି ବୋଲି ଭାବନ୍ତି ନାହିଁ । କୃପାମୟଙ୍କର ଆଶୀର୍ବାଦ ଲଭିକରି ମାନବ ମନ କାମନା ବାସନା ରହିତ ହେଲେ ତହିଁରେ ଯେଉଁ ଶୁଦ୍ଧ ଭାବର ଆଗମ ହୁଏ—ତାହାହିଁ ଭକ୍ତି । ଏହି ଭକ୍ତି ସ୍ୱୟଂ ଏକ ସ୍ଥାୟୀଭାବ, ଏବଂ ସ୍ୱତଃହିଁ ଆନନ୍ଦ ସ୍ୱରୂପା । ଏହା ବିଭାବ, ଅନୁଭାବ, ବ୍ୟଭିଚାରୀ ଭାବ ଓ ସାତ୍ତ୍ୱିକ ଭାବଦ୍ୱାରା ପରିପୁଷ୍ଟ ହୁଏ । ଏଣୁ ଏ ସବୁ ସହଯୋଗରେ ରସ ବା ପ୍ରେମରସ ଜାତ ହୁଏ । ଈଶ୍ୱରଙ୍କର ବିବିଧ ଗୁଣ ଶକ୍ତି ମଧ୍ୟରୁ ପ୍ରେମଲୀଳା ହେଉଛି ହ୍ଲାଦିନୀ ଶକ୍ତିର ପ୍ରକାଶ । ଗୋପୀମାନେ ହ୍ଲାଦିନୀ ଶକ୍ତିର ମୂର୍ତ୍ତିମନ୍ତ ରୂପ । ଶକ୍ତିର ପ୍ରକାଶିତ ଲୀଳାରେ 'ରମଣ' ଶବ୍ଦର ଅର୍ଥ ହ୍ଲାଦିନୀ ଶକ୍ତି ସମ୍ଭୋଗ ଚୈତନ୍ୟ ଚରିତାମୃତ ମତରେ ହ୍ଲାଦିନୀର ସାର ହେଉଛି ପ୍ରେମ ।

ହ୍ଲାଦିନୀର ସାର ଅଂଶ ତାର ପ୍ରେମ ନାମ,
ଆନନ୍ଦ ଚିନ୍ମୟ ରସ ପ୍ରେମର ଆଖ୍ୟାନ
ପ୍ରେମର ପରମସାର ମହାଭାବ ଜାନ,
ସେହି ମହାଭାବ ସ୍ୱରୂପ ରାଧାଠାକୁରାଣୀ ।" (ଚୈ.ଚ.ମୃ)

ଏଣୁ ଏହା ପ୍ରେମଲୀଳା । ତେଣୁ ଚୁମ୍ବନ, ଆଲିଙ୍ଗନ ଗୁଡ଼ିକ ଯାହା ବୈଷ୍ଣବ ସାହିତ୍ୟରେ ସଚରାଚର ଦୃଷ୍ଟି ଗୋଚର ହୁଏ, ତାହା କାମବଶରେ ନୁହେଁ, ପ୍ରେମ ବଶରେ । ଏହି ପ୍ରେମ ସହିତ ନିଜର ଇନ୍ଦ୍ରିୟ ପ୍ରୟୋଗର କୌଣସି ସମ୍ପର୍କ ନାହିଁ । ଶ୍ରୀକୃଷ୍ଣଙ୍କର ପ୍ରୀତିବିଧାନ କରିବାର ଇଚ୍ଛାହିଁ ହେଉଛି ପ୍ରେମ । ତେଣୁ—

"ଆତ୍ମେନ୍ଦ୍ରିୟ ତୃପ୍ତି ବାଞ୍ଛା ତାରେ ବଲିକାମ୍
କୃଷ୍ଣ ସୁଖ ହେତୁ କର୍ମ ଧରେ ପ୍ରେମ୍ ନାମ୍
କାମେର ତାତ୍ପର୍ଯ୍ୟ—ନିଜେର ପ୍ରୟୋଗ କେବଲ
କୃଷ୍ଣ ସୁଖ ତାତ୍ପର୍ଯ୍ୟ—ହୟ ପ୍ରେମ ପ୍ରବଲ ।" (ଚୈ.ଚ.ମୃ)

ଏହି ପ୍ରେମ ହୃଦୟରେ ଥରେ ଦେଖାଦେଲେ ଶ୍ରୀକୃଷ୍ଣଙ୍କୁ ଆଉ ଈଶ୍ୱର ବୋଲି ମନେକରି ହେବନାହିଁ ।

ବୈଷ୍ଣବୀୟ ପରିଭାଷାରେ ଗୋପୀ ପ୍ରେମକୁ ସମର୍ଥାରତି କହନ୍ତି । ଗୋପୀମାନେ ସମର୍ଥା ନାୟିକା । ତେଣୁ କୃଷ୍ଣ ଗୋପୀ ମାନଙ୍କର ମିଳନକୁ ମଦନ ଉତ୍ସବ ନଭାବି ପ୍ରେମୋତ୍ସବ ଭାବିବା ଉଚିତ । ସାହିତ୍ୟ ଦର୍ପଣ କହନ୍ତି ଯେ ଚିତ୍ତରେ ସତ୍ତ୍ୱଭାବ ଉଦ୍ରେକ ହେଲେ ଯେଉଁ ଅଖଣ୍ଡ, ଅପୂର୍ବ, ଚମତ୍କାର ଚିନ୍ମୟ ଭାବର ଉଦ୍ରେକ ହୁଏ; ଯେଉଁଥିରେ ରଜ, ତମ, ଗୁଣର ସ୍ପର୍ଶ ନାହିଁ ଏବଂ ବ୍ରହ୍ମାନନ୍ଦର ସହୋଦର ତୁଲ୍ୟ—ତାହାହିଁ ରସ । କିନ୍ତୁ କାମରସ ନୁହେଁ, ପ୍ରେମରସ ଦ୍ୱାରାହିଁ କେବଳ ବ୍ରହ୍ମାନନ୍ଦ ଲାଭ କରାଯାଇ ପାରେ । ସୁତରାଂ ପ୍ରେମରସ ବଳାସାତ୍ମକ କ୍ରୀଡ଼ା କରେ । ଅମୃତ—ରସ—ବ୍ରହ୍ମ ଅଖିଳର ରସାମୃତ ଶ୍ରୀକୃଷ୍ଣ, ପ୍ରେମରସ ଆସ୍ୱାଦନ ନିମିତ୍ତ ବୃନ୍ଦାବନରେ ଯୋଗମାୟା ଅବଲମ୍ବନ କରି ଶ୍ରୀରାଧା ଗୋପୀମାନଙ୍କ

ସଙ୍ଗେ ଯେଉଁ ଚିଦାନନ୍ଦମୟୀ କ୍ରୀଡ଼ା କରିଥିଲେ-ତାହାଙ୍କ ପ୍ରେମଲୀଳା । ବୈଷ୍ଣବସାହିତ୍ୟରେ ଇନ୍ଦ୍ରିୟ ଭୋଗର ସୂଚନା ଥିଲେହିଁ ତାହା ଅତୀନ୍ଦ୍ରିୟ ରସର ପରିଚୟ ଦିଏ । ଇନ୍ଦ୍ରିୟ ଗ୍ରାହ୍ୟ, ମାନସିକ, ଅତୀନ୍ଦ୍ରିୟ ଓ ଆତ୍ମିକ, ସକଳ ପ୍ରକାର ସମ୍ଭୋଗ ମଧ୍ୟରେ ରସର ସ୍ୱରୂପକୁ ଉପଲବ୍ଧି କରିବାହିଁ ପ୍ରକୃତ ପ୍ରେମ ସମ୍ଭୋଗ ଚୈତନ୍ୟ ଚରିତାମୃତ, ଉଜ୍ଜ୍ୱଳ ନୀଳମଣି, ଭକ୍ତିରସାମୃତ ସିନ୍ଧୁ ପ୍ରଭୃତି ବୈଷ୍ଣବୀୟ ଧର୍ମଗ୍ରନ୍ଥମାନଙ୍କରେ ଏହି ପ୍ରେମତତ୍ତ୍ୱର ବିଶେଷ ବ୍ୟାଖ୍ୟା କରାଯାଇଛି । ବିଦଗ୍ଧ କବି ଅଭିମନ୍ୟୁ ଏହି ଧର୍ମଗ୍ରନ୍ଥ ଗୁଡ଼ିକ ଅଧ୍ୟୟନକରି ବିଦଗ୍ଧ ଚିନ୍ତାମଣିରେ ସେହି ପ୍ରୀତିତତ୍ତ୍ୱର ଏକ ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି । ସେ ସ୍ୱ କାବ୍ୟର ୩୯,୪୬, ଓ ୯୪ ଛାନ୍ଦମାନଙ୍କରେ ପ୍ରୀତିତତ୍ତ୍ୱର ଯେଉଁ ସୂକ୍ଷ୍ମାତି ସୂକ୍ଷ୍ମ ବିଶ୍ଳେଷଣ କରିଛନ୍ତି ତାହା ଅସାଧାରଣ ।

କବି ଅଭିମନ୍ୟୁ ପ୍ରେମତତ୍ତ୍ୱ ବ୍ୟାଖ୍ୟା କରିବାକୁଯାଇ ତାଙ୍କୁ ମାନବୀୟ ଅନୁଭୂତି ମାଧ୍ୟମରେ ଯେପରି ପ୍ରକାଶ କରିଛନ୍ତି, ତାହା ତାଙ୍କ ଅସାଧାରଣ ପ୍ରତିଭାର ପରିଚୟ ଦିଏ । ଊନଚତ୍ୱାରିଂଶ ଛାନ୍ଦରେ ପ୍ରେମାନୁରାଗିଣୀ ରାଧା ବିଦଗ୍ଧ କୃଷ୍ଣଙ୍କର ପ୍ରୀତିଲାଭ ନକରି ଶୃଙ୍ଗାର ଶାସ୍ତ୍ର ପ୍ରବୀଣା ସଖୀ ବିଶାଖାକୁ ପ୍ରୀତିର ସ୍ୱରୂପ ବିଷୟରେ ପ୍ରଶ୍ନ କରିଛନ୍ତି—"କହ ପ୍ରୀତିକି ଜାତି ପଦାର୍ଥ ।" ଏହାର ଆଗମ କେଉଁଠୁ ଏବଂ ଏହାର ସ୍ରଷ୍ଟା କିଏ ? ପ୍ରିୟ ସଖୀ ବିଶାଖା ପ୍ରୀତି ଏକ "ଅବ୍ୟୟ, ଅକ୍ଷୟ, ନିତ୍ୟ ପଦାର୍ଥ" ବୋଲି କହିଛନ୍ତି ଏବଂ ଅର୍ଜିତ ଇନ୍ଦ୍ରିୟମାନେ ଏହା କେବଳ ସାଧନା କରିବାକୁ କ୍ଷମ ହୁଅନ୍ତି । ଏହା ସମବୟ, ବୁଦ୍ଧି, ଶୋଭାଯୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଜାତହୁଏ । ମଣିଷଭେଦରେ ଏହି ପୀତିର ବିବିଧ ରୂପ ।

ଏହା ନିକୃଷ୍ଟ, ମଧ୍ୟମ ଓ ଉତ୍ତମ ଭାବେ ବିଭକ୍ତ । କବି ଏହାକୁ ବିଶେଷ ବ୍ୟାଖ୍ୟା କରିବାକୁ ଯାଇ ନିକୃଷ୍ଟ ପ୍ରୀତିକୁ ଦର୍ପଣରେ ପ୍ରତିବିମ୍ବିତ ହେଉଥିବା ଛାୟାତୁଲ୍ୟ, ମଧ୍ୟମକୁ ଜଳରେ ପ୍ରତିଫଳିତ ହେଉଥିବା ଛାୟାସମ ଓ ଉତ୍ତମକୁ ଅକ୍ଷୟ ଅକ୍ଷୁର୍ଣ୍ଣ ପୂର୍ଣ୍ଣଚନ୍ଦ୍ର ସହିତ ତୁଳନା କରିଛନ୍ତି । ହୃଦୟ କେଦାରରେ କନ୍ଦର୍ପ ବପନ କରିଥିବ । ପ୍ରେମବୀଜ ଯୌବନ ଅବସ୍ଥାରେ ଅଙ୍କୁରିତ ହୋଇ, ସୁରସ ବୃଷ୍ଟି ଲାଭକରି ହାବ, ଭାବ, ପରିହାସ ରୂପକ ଡାଳ ପତ୍ର ଓ ଫଳରେ ପରିଣତ ହୁଏ । ଏହାକୁ ଥରେ ଆସ୍ୱାଦନ କଲେ ଏହାର ମାଦକତା ମତ୍ତବିହ୍ୱଳ କରାଏ ଓ ତାହା ଆଜୀବନ କାର୍ଯ୍ୟକରେ । ଏ ସଂସାରରେ ଦେହ ମନର ଆୟତ୍ତ ହୋଇ, ମନ ଇନ୍ଦ୍ରିୟ ବଶ ହୋଇ, ଇନ୍ଦ୍ରିୟ ପ୍ରକୃତି ଅଧୀନ ହୋଇ, ପ୍ରକୃତି ସ୍ୱଭାବ ଦ୍ୱାରା ଜାତହୋଇ, କନ୍ଦର୍ପର ଅଧୀନ ହୁଅନ୍ତି । ପୁଣି ସେହି କନ୍ଦର୍ପ ସୁରତିରେ ବଶ ହୋଇ, ସେ ରତିପ୍ରୀତିରୁ ଜନ୍ମଲାଭ କରି, ଭାବ ସମ୍ବନ୍ଧ ପ୍ରୀତି ଆଲମ୍ବନ ବିଭାବ ଓ ବିବିଧ କ୍ରିଡ଼ା ଉଦ୍ଦୀପନ ବିଭାବହୋଇ ସୁଖ ଜାତହୁଏ ଓ ତହିଁରୁ ପ୍ରୀତିପ୍ସୁ ଆନନ୍ଦ ଲାଭକରେ । ପ୍ରୀତିର ଉଭୟ ଗୁଣଥାଏ । ମିଳନରେ ଯେତିକି ସୁଖ ବିଚ୍ଛେଦରେ ସେତିକି ଦୁଃଖ । ସମ୍ଭୋଗ କାଳରେ କୋଟିବ୍ରହ୍ମାଣ୍ଡ ସୁଧାକୁ 'ଛି', ଆଉ ବିଚ୍ଛେଦ ସମୟରେ କୋଟିବ୍ରହ୍ମାଣ୍ଡ ଦୁଃଖ କିଛିନୁହେଁ ଜାଣ । ଏ ପ୍ରୀତି ପ୍ରବେଶ ହେଲେ ଅବିଧି ବିଧିମାନ ସିଦ୍ଧି କରେ । ଜାତିକୁଳମାନଙ୍କୁ ଜଳାଞ୍ଜଳି ଦେବାକୁ ହୁଏ । କଳଙ୍କ ପସରାକୁ ମୁଣ୍ଡାଇ ଅପକୀର୍ତ୍ତି ହାଟରେ ବସିବାକୁ ହୁଏ । କିନ୍ତୁ ପ୍ରୀତିପ୍ସୁର ସେଥିପ୍ରତି ଭ୍ରୂକ୍ଷେପ ନଥାଏ । ଏହା ଅନଳ ନୁହେଁ କିନ୍ତୁ ଦେହ ଦହନ କରେ । ଅସ୍ତ୍ର ନୁହେଁ, ମରମରେ ଭେଦେ । ଜଳ ନୁହେଁ, କୂଳ ବୁଡ଼ାଏ । ମାଦକ ନୁହେଁ;

ବହ୍ନଲ କରେ । ବଡ଼ଶୀ ନୁହେ, ମନ ମୀନକୁ ଆକର୍ଷେ । ଏହା ତୀକ୍ଷ୍ଣ ଅସିରେ ପଥ ଚଳିଲାଠାରୁ, ଶୂନ୍ୟ ଆରୋହଣଠାରୁ, ପବନକୁ ଫାନ୍ଦରେ ଧରିବାଠାରୁ ଆହୁରି କଠିନ । ଏହା ବାରୁଦ ସହିତ ଅନଳ ଯୋଗ ହେଲାପରି । ଏହା ଜାଣିଥିବାଯାକେ ଛାଡ଼ିକରି ଯାଏନା । ଚକ୍ଷୁ ବୁଜିଲେ ହୃଦୟରେ ପଶେ, ନିଦ୍ରା ଆଇଲେ ସ୍ୱପନରେ ଦିଶେ । ଯେ ହୃଦୟରେ କେବଳ ସ୍ମୃତି ବାନ୍ଧିଥିବ ସେ କେବଳ ପ୍ରୀତିକୁ ମନ୍ତ୍ର ବଳାଇବ । ତା ନୋହିଲେ "ପୀରତି କଲାଯେ ଗଲାଟି ମାରି" ।

ପ୍ରୀତିର ଏବଂବିଧ ଗୁଣ ଶୁଣି ଧୀର ଅଧୀର ହେବାରୁ ଓ ବିଶାଖା କୃଷ୍ଣ ନାଗର ସହିତ ପଦ୍ମିନୀମୂଳ ସଂଯୋଗ କରି ପରିପାକ ଅବସ୍ଥାରେ ଶୁଚିବନ୍ତହୋଇ ପିଇବାକୁ ଅନୁରୋଧ କରନ୍ତେ, ଏହା ଦୁଷ୍ପ୍ରାପ୍ୟ ମନେକରି କୃଷ୍ଣାଗପତ୍ରାଣା ରାଧା ସବୁ ସଜନୀଙ୍କ ହାତଧରି କହିଲେ—

"ଜୀବନ ଗଲେ ଏତିକି କରିବ, ଶ୍ୟାମନାମ ମୋର ହୃଦେ ଲିହିବ ।
ଶ୍ୟାମ ରୂପ ମୂର୍ତ୍ତି ହୃଦେ ଲଦାଇ ।
ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ"

ଶ୍ୟାମ ଗତିପଥରେ ପୋତି ଦେବ ।

ତା ନୋହିଲେ "କୃଷ୍ଣବଂଶୀ ଶୁଭୁଥିବ ଯେଣିକି" ତେଣିକି କର୍ଣ୍ଣକରି ଦେବାକୁ ଆତୁରହୋଇ କହିଲେ । ଏଠାରେ ଏତକ କୁହାଯାଇପାରେ ଯେ, ଏହା ବିଶାଖା ଉବାଚ ନୁହେଁ । ରାଧାଭାବ କବି ଭକ୍ତ ଅଭିମନ୍ୟଙ୍କର କୃଷ୍ଣଙ୍କପ୍ରତି ଅନ୍ତରର ବାଣୀ ।

ତେଣୁ କୃଷ୍ଣବଲ୍ଲଭଙ୍କ ପ୍ରେମପ୍ରାପ୍ତି ବିନୁ ଏ ସଂସାର ଯେ ଅସାର, ତାହା ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ।

ବିଦଗ୍ଧମାଧବ ଗ୍ରନ୍ଥରେ କବି କୃଷ୍ଣ ମଧୁମଙ୍ଗଳ ପ୍ରୀତି ପ୍ରଯୁକ୍ତି ମଧ୍ୟରେ ପ୍ରେମତତ୍ତ୍ୱ ବ୍ୟାଖ୍ୟା କରିଛନ୍ତି । କୌଣସି ସମୟରେ କୃଷ୍ଣ ରାଧାପ୍ରୀତି ବିନା କନ୍ଦର୍ପ ଦ୍ୱାରା ଆକ୍ରାନ୍ତ ହୋଇ ସଖା ମଧୁମଙ୍ଗଳକୁ ପ୍ରୀତିର ସ୍ୱରୂପ, ଜାତି, ବର୍ଣ୍ଣ, ଚିହ୍ନ, ଗୁଣ, ରୀତି, କରିବା କରାଇବା ଶକ୍ତି ଆଦି ବିଷୟରେ ପୁଚ୍ଛା କରିଛନ୍ତି । ସଖା ମଧୁମଙ୍ଗଳ ପ୍ରଥମେ ଦାର୍ଶନିକ ଦୃଷ୍ଟିକୋଣରୁ ପ୍ରୀତି ତତ୍ତ୍ୱର ବ୍ୟାଖ୍ୟାକରି ଏହା ନିତ୍ୟ, ନିର୍ମଳ, ଅଚିନ୍ତ୍ୟ, ଅବ୍ୟକ୍ତ, ଅକ୍ଷୟ, ଅବ୍ୟୟ ଓ ସଚ୍ଚିଦାନନ୍ଦ ବିଷ୍ଣୁଙ୍କର ତିନି ଗୋଟି—ଶକ୍ତି ସନ୍ଧିନୀ, ସମ୍ବିଦ୍ଧିନୀ ଓ ଆହ୍ଲାଦିନୀର ପ୍ରକାଶ ବୋଲି କହିଛନ୍ତି । ମନୁଷ୍ୟ ନିଜର ପଞ୍ଚ ଜ୍ଞାନେନ୍ଦ୍ରିୟ ସାହାଯ୍ୟରେ ପଞ୍ଚ ଭୌତିକ ବିକାର ଲାଭକରି ରୂପରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶ,ଏହି ପଞ୍ଚ ବିଷୟ ଭୋଗ କରିଥାଏ । ଏହି ପଞ୍ଚ ବିଷୟ ମଧ୍ୟରେ ରସହିଁ ଶ୍ରେଷ୍ଠ । ରସ ପଞ୍ଚବିଧ ଏବଂ ତନ୍ମଧ୍ୟରୁ ମଧୁର ରସହିଁ ପ୍ରଧାନ । ଏହି ମଧୁର ରସ ବା ମାଧୁର୍ଯ୍ୟ ପ୍ରୀତିର ଚିର ସହଚର । ସେଥିପାଇଁ ବୈଷ୍ଣବ ପ୍ରାମାଣିକ ଗ୍ରନ୍ଥ "ଉଜ୍ଜ୍ୱଳ ନୀଳମଣି" ରେ ମଧୁର ରସକୁ 'ରସରାଟ' ବୋଲି କୁହାଯାଇଛି ।

ରତି ଆଉ ପ୍ରୀତିର ଏକମାତ୍ର ସ୍ଥଳ ହେଉଛି ମନୁଷ୍ୟ । କୀଟ ପତଙ୍ଗ କିମ୍ବା ସ୍ଥାବରମାନଙ୍କ ମଧ୍ୟରେ ପ୍ରୀତିର ପୂର୍ଣ୍ଣ ପ୍ରକାଶ ହୁଏନା । ନାରୀ ନାରୀ ମଧ୍ୟରେ କିମ୍ବା ପୁରୁଷ ପୁରୁଷ ମଧ୍ୟରେ ପ୍ରକୃତ ରତି ସମ୍ଭବ ନୁହେଁ ବୋଲି ପ୍ରୀତି ନିରସ ଓ ଶୁଷ୍କ ଦିଶେ । ତେଣୁ ନାଗର ନାଗରୀ ହେଉଛନ୍ତି ପ୍ରୀତିର ପକୃଷ୍ଟ କ୍ଷେତ୍ର ।ନସ ପୁଣି

ପ୍ରୀତିର ଏକ ସ୍ୱୟଂସମ୍ପୂର୍ଣ୍ଣ ବିଶ୍ଳେଷଣ ଦେଇ କହିଛନ୍ତି ଯେ- ଏହା ସ୍ୱକୀୟା (କୃଷ୍ଣ ରୁକ୍ମିଣୀ) ଓ ପରକୀୟା (କୃଷ୍ଣ ଗୋପୀ) ଭେଦରେ ଦୁଇ ଭାଗରେ ବିଭକ୍ତ । ସାଧାରଣ ଐଶ୍ୱର୍ଯ୍ୟ ସହିତ ସମ୍ପର୍କ ଥିବାରୁ ସ୍ୱକୀୟା ପରକୀୟାଠାରୁ ହୀନଅଟେ । ପରକୀୟ ସମର୍ଥା (କୃଷ୍ଣ ଗୋପୀ) ଓ ସାଧାରଣୀ (କୃଷ୍ଣ କୁବ୍‌ଜା) ଏହିଭଳି ଦୁଇ ଭାଗରେ ବିଭକ୍ତ । ପ୍ରୟୋଜନପାଇଁ ଯେଉଁ ରତି, ତାହା ସାଧାରଣୀ ନାମରେ କଥିତ । ଯେଉଁ ରତିରେ ପ୍ରିୟାପାଇଁ ପ୍ରାଣ ମୂର୍ଚ୍ଛିବାକୁ ହୁଏ, ତାହାକୁ ସମର୍ଥା ରତି କହନ୍ତି । ତାହା ଦୁଇ ପ୍ରକାର-ସମ୍ବନ୍ଧାନୁଗା (କୃଷ୍ଣ ରୁକ୍ମିଣୀ) ଓ ରାଗାନୁଗା(କୃଷ୍ଣ ରାଧା) । ସମ୍ପର୍କ ଥିବାରୁ ଯେଉଁ ପ୍ରୀତିହୁଏ ତାହା ସମ୍ବନ୍ଧାନୁଗା ଓ ଏଥିରେ ସମ୍ବନ୍ଧ ଥିବାରୁ ଅଧେ ସ୍ୱକୀୟା ରତି ଅଛି ବୋଲି ଜଣାଯାଏ । ଯେଉଁ ରତିରେ ପୂର୍ଣ୍ଣ ମାତ୍ରାରେ ଓ ନିର୍ମଳ ଭାବରେ ପ୍ରୟୋଜନର କାମନା ତ୍ୟାଗ କରିଯାଇଥାଏ, ତାହାକୁ ଶୁଦ୍ଧ ରାଗାନୁଗା କହନ୍ତି । ଏଣୁ ଶୁଦ୍ଧ ରାଗାନୁଗା ସର୍ବଶ୍ରେଷ୍ଠ । ଏଥିରେ ଆତ୍ମେନ୍ଦ୍ରିୟ ତୃପ୍ତି ବାଞ୍ଛାର ଗନ୍ଧ ପର୍ଯ୍ୟନ୍ତ ନଥାଏ । ପ୍ରୀତିୟା ଯଦି ରୂପ, ଗୁଣ ଓ ମହତ୍‌କୁଳୋଦ୍ଭବ ହୋଇଥାନ୍ତି ତା'ହୋଲେ ପ୍ରୀତି ମହିମା ମଣ୍ଡିତ ହୋଇ ବୃଦ୍ଧି ପ୍ରାପ୍ତ ହୁଏ । ପ୍ରୀତିରେ ଯେତିକି ପରିମାଣରେ ଲଜ୍ଜା ଭୟ ଜଡ଼ିତ ହୋଇଥାଏ ତାହା ସେତିକି ପରିମାଣରେ ଗାଢ଼ ହୁଏ । ପୁଷ୍ପମାଳା, ଚନ୍ଦନ, ତାମ୍ବୁଳ, ବେଶସଜ୍ଜା' ଏକାନ୍ତରେ କ୍ରୀଡ଼ା, ସଙ୍ଗୀତ ଚର୍ଚ୍ଚା ପ୍ରଭୃତି ପ୍ରୀତି ର ଉଦ୍ଦୀପନ ବିଭାଗ ଅଟନ୍ତି ।

ତତ୍‌ପରେ ମଧୂମଙ୍ଗଳ ପ୍ରୀତିର ସର୍ବବ୍ୟାପୀ ପ୍ରଭାବ ବର୍ଣ୍ଣନା କରିବାକୁଯାଇ କହିଛନ୍ତି ଯେ, ପ୍ରୀତିୟା ସମଧର୍ମୀ ହୋଇଥିଲେ ନାମମାତ୍ର ଶ୍ରବଣରେ ସେମାନେ ଜ୍ଞାନ ଜ୍ଞାନ ଭୁଲି ବସନ୍ତି । ଉଭୟେ

ପରସ୍ପରକୁ ଦେଖି ଅପ୍ରାକୃତ ପ୍ରେମଜନିତ ଶରୀରରେ ବ୍ରହ୍ମାନନ୍ଦ ସୁଖ ଆସ୍ୱାଦନ କରନ୍ତି । ଶରୀରର ଜ୍ଞାନେନ୍ଦ୍ରିୟମାନେ କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ପ୍ରଭୃତି ଭଲମନ୍ଦ ବିଚାର ନକରି ପାଗଳ ଭାବରେ ତାହାର ଅନୁଗତ ହୋଇଥାନ୍ତି । ପ୍ରେମିକା ଧର୍ମ-ଚକ୍ରବାଡ଼ ଲଙ୍ଘନକରି ନନ୍ଦା ସିନ୍ଧୁର ସ୍ନେହ-ପୋତରେ ବସି କଳଙ୍କ ମୁକୁଟକୁ ଶିରରେ ଦେଇ ମହତ୍ତ୍ୱ-ଗିରିବରକୁ ଚୂର୍ଣ୍ଣକରେ । ତେଣୁ ଏଭଳି ପ୍ରୀତିଠାରୁ ଉଦ୍ଧାର ଯିବା ସହଜ ନୁହଇ । ନାୟକ ନାୟିକାର ମନ ପରମବ୍ରହ୍ମରେ ଜୀବାତ୍ମା ମିଶିଲପରି ପରସ୍ପର ମିଶିଯାଏ । ବ୍ରହ୍ମ ଜୀବକୁ ଓ ଜୀବ ବ୍ରହ୍ମକୁ ଆଶ୍ରୟ ଓ ଅବଲମ୍ବନକରି ରହିଲା ପରି ଦୁହେଁ ଦୁହିଁଙ୍କୁ ଆଶ୍ରୟ କରିଥାନ୍ତି । ସମସ୍ତ ପ୍ରକୃତି ଦ୍ରବ୍ୟ ଗୁଣ ଓ କ୍ରିୟାରେ ଗଢ଼ା; ତେଣୁ ପ୍ରକୃତି ଜଗତ୍- ଲୀଳା ପ୍ରସଙ୍ଗରେ ସବୁବେଳେ ଜୀବାତ୍ମା ଓ ପରମାତ୍ମାର ସମ୍ପର୍କ ବଢ଼ାଇ ଦେଉଥାଏ । ସେହିପରି ସଂସାରର କେତେକ କାର୍ଯ୍ୟ କଳାପ ନାୟକ ଓ ନାୟିକାର ପ୍ରେମକୁ ବଢ଼ାଇ ଦିଏ । ପରମାତ୍ମା ଓ ଜୀବାତ୍ମା ଦୁହେଁ ସବୁବେଳେ ଦୁହିଁଙ୍କୁ ଖୋଜିବାରେ ପାଗଳ ହୁଅନ୍ତି । ସେହିପରି ନାୟକ ନାୟିକାର ପ୍ରେମ ଭିନ୍ନହେଲେ ଜୀବନ ଧରିବା ଅସମ୍ଭବ; ତେଣୁ ପ୍ରେମରେ ପ୍ରୀତିପ୍ରିୟା ପାଗଳହୋଇ ଯାଆନ୍ତି ।

ଗୁରୁଜନ ଲୋକଥିଲେ ଲାଜ ଭୟରେ କିଛି କହି ହୁଏନା କି ଶୁଣି ହୁଏନା କିନ୍ତୁ ନଶୁଣିଲା ପରି ହୋଇ ମଧ୍ୟ ପ୍ରିୟା ପୋଥିଏ କଥା ଗୋଟିଏ କଟାକ୍ଷରେ କହେ । ଅଧର କମ୍ପିଉଠେ, ସ୍ୱତଃ ଭାଷା ପ୍ରକାଶ ପାଏ, ଖର ନିଶ୍ୱାସ ବହେ, ଆଶା ନିରାଶର ଦ୍ୱନ୍ଦମଧ୍ୟରେ ସାତ୍ତ୍ୱିକ ବିକାର ମାନ ଦେଖାଦିଏ । ପ୍ରୀତି ଜଳଲୁଚେ କିନ୍ତୁ ତାହା ସିକ୍ତକରେ । ପ୍ରିୟା ଧନ ନଥାଇ ମଧ୍ୟ ଗର୍ବେଶ୍ୱର ବୋଲାନ୍ତି ।

ତମ ନକର ପୁଣ୍ୟଲାଭ କରନ୍ତି, ପାପୀ ନହନ୍ତି କନ୍ତୁ ଦଣ୍ଡ ଘେନନ୍ତି । ଅମର ନହୋଇ ମଧ୍ୟ ସ୍ୱର୍ଗ ସଂପତ୍ତି ଲାଭ କରନ୍ତି । ପ୍ରୀତି ଚନ୍ଦ୍ର ନୁହେଁ, କନ୍ତୁ ଶୀତଳତା ଦାନ କରେ । ଏହା ମାଦକ ଦ୍ରବ୍ୟ ନୁହେଁ ଉନ୍ମତ୍ତ କରାଏ । ଏହା ସର୍ବେନ୍ଦ୍ରିୟ ଆକର୍ଷୀ । ବେଦବାଦୀ ବ୍ରହ୍ମାଙ୍କଠାରୁ ଏମାନଙ୍କର ସୃଷ୍ଟି ସ୍ୱତନ୍ତ୍ର । ଏମାନେ ଧର୍ମ, କୁଳ, ବିବେକ ନାଶ କରିଥାନ୍ତି । ଯେଉଁମାନେ ପ୍ରୀତି ରୂପକ କୃଷି କର୍ଷଣ କରିଥାନ୍ତି, ସେମାନେ କେବଳ ଶାନ୍ତି ଲାଭ କରନ୍ତି । ତେଣୁ ଦୂରରେ ରହି ସେ ପ୍ରୀତିକୁ ନମସ୍କାର କରିବାକୁ ମଧୁମଙ୍ଗଳ କୃଷ୍ଣଙ୍କୁ ଜଣାଇଛନ୍ତି ।

ବୈଷ୍ଣବ ସାହିତ୍ୟରେ ଅନେକେ ପ୍ରୀତିକୁ ଆଦର୍ଶଗତ ରୂପେ ଗ୍ରହଣକରି ବାସ୍ତବକ୍ଷେତ୍ରରେ ତାହା ଯେ ସମ୍ପୂର୍ଣ୍ଣ ଅସମ୍ଭବ, ଏପରି ମତ ପ୍ରକାଶ କରିଥାନ୍ତି । କନ୍ତୁ ପ୍ରକୃତରେ ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ସ୍ଥାନ ବିଶେଷ ନେଇ ଏହା ଅତି ବାସ୍ତବ ଓ ସ୍ୱାଭାବିକ । ସାଂସାରିକ କ୍ଷେତ୍ରରେ ପ୍ରୀତିର ପ୍ରଭାବ ଏତେ ସୁଦୂର ପ୍ରସାରୀ ଯେ, ଯାହାକୁ ଏଡ଼ିଦେବା ଅଧିକାଂଶଙ୍କ ପକ୍ଷରେ ଏକାବେଳକେ ଅସମ୍ଭବ । ତେଣୁ ବୈଷ୍ଣବମାନେ ଏହି ପ୍ରୀତିକୁ ମାଧ୍ୟମ କରି ସେମାନଙ୍କର ଧର୍ମତତ୍ତ୍ୱ ବ୍ୟାଖ୍ୟା ଅତି କୌଶଳର ସହ କରାଇ ପାରିଛନ୍ତି ।

ଅଭିମନ୍ୟୁ ଏହା ଉପଲବ୍ଧିକରି କୃଷ୍ଣଙ୍କ ମୁଖରେ କୁହାଇଛନ୍ତି "ଜୀବଥିବା ଯାକେହେ । ସାର ପ୍ରୀତିକି ତେଜି ପାରିବକେ ?" ତେଣୁ ସମଗ୍ର ବୈଷ୍ଣବ ସାହିତ୍ୟରେ ସାଂସାରିକ ପ୍ରୀତି ମାଧ୍ୟମରେ ଶାଶ୍ୱତ ଓ ଚିରନ୍ତନ ପ୍ରୀତିର ପ୍ରଚାର କରାଯାଇଛି । ଏହି ଦୃଷ୍ଟିରୁ କୁହାଯାଇପାରେ ଯେ, ବିଦଗ୍ଧ

ଚିନ୍ତାମଣିର ପ୍ରୀତିତତ୍ତ୍ୱ ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ଅବଶ୍ୟ ଅନେକ କ୍ଷେତ୍ରରେ ଅନେକ ଭାବ କଦର୍ଥ କରିଥାନ୍ତି । ଏହି ପ୍ରୀତିକୁ ହୃଦୟରେ ଧାରଣକରି କାୟ ମନ ବାକ୍ୟରେ କୃଷ୍ଣଗତ ପ୍ରାଣ ହୋଇପାରିଲେ କୃଷ୍ଣପ୍ରାପ୍ତି ଅସମ୍ଭବ ହୋଇ ରହେନା । ଏହା ପରମ ବୈଷ୍ଣବମାନେହିଁ ଉପଲବ୍‌ଧି କରିଛନ୍ତି ।

## ଚରିତ୍ର ଚିତ୍ରଣ

କାବ୍ୟ, ଉପନ୍ୟାସ ଓ ନାଟକ ପ୍ରଭୃତିରେ ଲେଖକ ବିଭିନ୍ନ ଚରିତ୍ର ମାଧ୍ୟମରେ କଥାବସ୍ତୁକୁ ଗତିଶୀଳ କରାଇ ଏହାର ସମାପ୍ତି ଟାଣିଥାନ୍ତି । ତେଣୁ ଆଦର୍ଶ ଚରିତ୍ର ଚିତ୍ରଣରେ ଏଗୁଡ଼ିକର ଉତ୍କର୍ଷ ପ୍ରତିପାଦିତ ହୋଇଥାଏ । ଅନ୍ୟାନ୍ୟ କାବ୍ୟ ମାନଙ୍କରେ ବିଭିନ୍ନ ଚରିତ୍ର ସୃଷ୍ଟିକରି ଚିତ୍ରଣ କରିବାର ସ୍ୱାଧୀନତା କବି ନିକଟରେ ଯେତିକି ଅଛି, ବୈଷ୍ଣବ କାବ୍ୟକାର ନିକଟରେ ତାହା ଆଶାକରିବା ବୃଥା । କାରଣ, ଏଥିରେ କେତେ ଗୁଡ଼ିଏ ନିର୍ଦ୍ଦିଷ୍ଟ ଚରିତ୍ରର ଚିତ୍ରଣ ମାତ୍ର କରାଯାଏ । ସେମାନେ ହେଲେ ଶ୍ରୀକୃଷ୍ଣ, ଶ୍ରୀରାଧା, ଗୋପାଙ୍ଗନା, ନନ୍ଦ, ଯଶୋଦାଙ୍କ, ମ, ଦେବକୀ, ବସୁଦେବ, ଉଦ୍ଧବ ଓ ଅକ୍ରୂର ପ୍ରଭୃତି । ଏମାନଙ୍କ ମଧ୍ୟରୁ ସବୁ କାବ୍ୟରେ ଏସବୁ ଚରିତ୍ରର ଅବତାରଣା ମଧ୍ୟ କରାଯାଇ ନଥାଏ । ରସକଲ୍ଲୋଳ ବିଦଗ୍ଧ ଚିନ୍ତାମଣିରେ ସେହିପରି ସମାନ ସମାନ ଚରିତ୍ର ଅବତାରଣା କରାଯାଇନି । ରସକଲ୍ଲୋଳରେ କୃଷ୍ଣ, ରାଧା, କଂସ, ଦେବକୀ ବସୁଦେବ ଓ ଉଦ୍ଧବ ପ୍ରଭୃତି ଯେଉଁ କେତେ ଗୁଡ଼ିଏ ଚରିତ୍ରର ସମାବେଶ କରାଯାଇଛି ତାହା ଆଶାନୁରୂପ ପରିସ୍ଫୁଟନ ହୋଇ ପାରିନି । ବିଦଗ୍‌ଧ ଚିନ୍ତାମଣିରେ ରାଧା, କୃଷ୍ଣ, ଚନ୍ଦ୍ରାବଳୀ,

ବିଶାଖା ଓ ସଖୀ ମାନଙ୍କର ଚରିତ୍ର ଚିତ୍ରିତ । ବୈଷ୍ଣବକବିମାନେ ଭକ୍ତି ରସାଶ୍ରୟୀ ହୋଇଥିବାରୁ ସ୍ୱରସ ଦୃଷ୍ଟିରୁ ଚରିତ୍ର ଚିତ୍ରଣ କରନ୍ତି । କିନ୍ତୁ ରାଧାକୃଷ୍ଣ ଚରିତ୍ରକୁ ଏମାନେ କାବ୍ୟର ନାୟକ ନାୟିକା ରୂପେ ଗ୍ରହଣ କରିଥିବାରୁ ଅନେକାଂଶରେ ଏମାନଙ୍କ ମଧ୍ୟରେ ସାମ୍ୟ ପରିଲକ୍ଷିତ ହୁଏ ।

ଶ୍ରୀକୃଷ୍ଣ :—

ବିଷ୍ଣୁ ଉପାସକମାନଙ୍କୁ ବୈଷ୍ଣବ କୁହାଯାଏ । ଏମାନେ ଚାରିଟି ସଂପ୍ରଦାୟରେ ବିଭକ୍ତ । ଏମାନେ ହେଲେ ଶ୍ରୀ (ରାମାନୁଜାଚାର୍ଯ୍ୟ) ବ୍ରହ୍ମ (ମାଧ୍ୱାଚାର୍ଯ୍ୟ), ରୁଦ୍ର (ବିଷ୍ଣୁସ୍ୱାମୀବଲ୍ଲଭ) ସନକ (ନିମ୍ବାର୍କାଚାର୍ଯ୍ୟ)। କିନ୍ତୁ ଶ୍ରୀଚୈତନ୍ୟ କୌଣସି ସଂପ୍ରଦାୟଭୁକ୍ତ ନୁହଁନ୍ତି । ସେ ହେଉଛନ୍ତି "ଅଚିନ୍ତ୍ୟ ଭେଦାଭେଦ ବାଦୀ ।" ଭଗବାନ ମାୟାର ଅଧୀଶ୍ୱର, ଜୀବ ମାୟାର ଅଧୀନ । ତେଣୁ ମାୟାର ଅଧୀନ ଜୀବ । ମାୟାର ଅଧୀଶ୍ୱର ଯେ ଇଶ୍ୱର, ତାଙ୍କ ସମ୍ବନ୍ଧରେ ଭେଦ ଅଛି କି ନା, ତାହା ଅବଧାରଣା କରିପାରିବ ନାହିଁ । ଏଣୁ ଏହା ଅଚିନ୍ତ୍ୟ । ଏହାହିଁ ଅଚିନ୍ତ୍ୟା ଭେଦାଭେଦ ବାଦ । ଏହି ମତର ପୃଷ୍ଟପୋଷକମାନଙ୍କୁ ଗୌଡ଼ୀୟ ବୋଲି କୁହାଯାଏ । ଏମାନେ କହନ୍ତି "କୃଷ୍ଣସ୍ତୁ ଭଗବାନ ସ୍ୱୟଂ ।" ତେଣୁ ଈଶ୍ୱର ପରମଃ କୃଷ୍ଣ ସଚ୍ଚିଦାନନ୍ଦ ବିଗ୍ରହ ।" ଭାରତର ବହୁ ପୁରାଣ ଶାସ୍ତ୍ରରେ କୃଷ୍ଣଙ୍କୁ ମୁଖ୍ୟ ଚରିତ୍ରରୂପେ ଗ୍ରହଣ କରିଯାଇଛି ବା ତାଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି । ତେଣୁ ବେଦ, ଗୀତା ଠାରୁ ଆରମ୍ଭ କରି ନାଟ୍ୟଶାସ୍ତ୍ର ପର୍ଯ୍ୟନ୍ତ ସବୁଆଡ଼େ ଆମେ କୃଷ୍ଣଙ୍କୁ ଦେଖିବାକୁ ପାଉଁ । କିନ୍ତୁ ବେଦ, ଗୀତା, ମହାଭାରତର କୃଷ୍ଣ ଗୌଡ଼ୀୟ ବୈଷ୍ଣବମାନଙ୍କର କୃଷ୍ଣ ନୁହଁନ୍ତି । ସେ ଦ୍ୱାରକାର

ଅଷ୍ଟପାଟବଂଶୀଙ୍କର ପ୍ରାଣବଲ୍ଲଭ ନୁହନ୍ତି । ଗୋଲୋକର ଅଧିପତି ନୁହନ୍ତି କି ଗତିମୁକ୍ତିଦାତା ନିରାକାର ଶୂନ୍ୟବ୍ରହ୍ମ ନୁହନ୍ତି । ସେ କେବଳ ରୂପ ରସର ବିକାଶ ଓ ତୃପ୍ତି । ସେ ନିଖିଳ ରସାମୃତ ସିନ୍ଧୁ । ତେଣୁ ରସରାଜ ଭଗବାନ କୃଷ୍ଣ ନିତ୍ୟବୃନ୍ଦାବନରେ ଯେଉଁ ଲୀଳା କରନ୍ତି ତାହାର ସ୍ୱାଦୁ କିମ୍ବା ସ୍ୱରୂପ ଜ୍ଞାନ ସାଧାରଣରେ ବୋଧ୍ୟ ନୁହେଁ । ତେଣୁ ନିତ୍ୟଧାମର ସେହି ଅଲୌକିକ ପ୍ରେମ ସମ୍ବଳିତ ଲୀଳାକୁ ସେ ମର୍ତ୍ତ୍ୟରେ ଦେହଧାରଣ ପୂର୍ବକ ପ୍ରଦର୍ଶନ କରନ୍ତି । ସେଥିପାଇଁ କୃଷ୍ଣ ହେଉଛନ୍ତି ଲୀଳା ପୁରୁଷୋତ୍ତମ ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଚିତ୍‌ଶକ୍ତି ଓ ସେ ଚିନ୍ମୟୀ । ସେ ଭଗବାନ କୃଷ୍ଣଙ୍କର ହ୍ଲାଦିନୀଶକ୍ତିର ପରିପ୍ରକାଶ । ତେଣୁ ସେ ହେଲେ ଚିଦାନନ୍ଦମୟୀ । ଏମାନଙ୍କ ମଧ୍ୟରେ ଭେଦାଭେଦ ନାହିଁ । ଚୈତନ୍ୟ ଚରିତାମୃତରେ ଅଛି—

ରାଧା ପୂର୍ଣ୍ଣଶକ୍ତି କୃଷ୍ଣ ପୂର୍ଣ୍ଣ ଶକ୍ତିମାନ ।
ଦୁଇବସ୍ତୁ ଭେଦ ନାହିଁ ଶାସ୍ତ୍ର ପରମାଣ ।"

ଶକ୍ତି ଓ ଶକ୍ତିମାନ ଏକ ଅବିଚ୍ଛିନ୍ନ ବସ୍ତୁ । ଏହି ଭାବକୁ ମୂଳକରି କବି ଅଭିମନ୍ୟୁ ରାଧାକୃଷ୍ଣ ଏଭଳି ଏକ ଅବିଚ୍ଛିନ୍ନ ବସ୍ତୁର ପରିକଳ୍ପନା କରି ବିଦଗ୍ଧ ଚିନ୍ତାମଣିର ପ୍ରାରମ୍ଭରେ ଲେଖିଛନ୍ତି—

"ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି ।
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରେ ଅବତରି ।"

ରାଧା ଆଉ ହରି ବା କୃଷ୍ଣ, ପ୍ରକୃତି ଓ ପୁରୁଷ ରୂପେ ବିଦ୍ୟମାନ । ଏହି ପ୍ରକୃତି ଓ ପୁରୁଷ ଅନନ୍ତକାଳ ଧରି ପରସ୍ପର

ସଂଯୋଗ ସ୍ଥାପନକରି ଆସିଛନ୍ତି । ଏହି ଦୁଇର ମିଳନରେ ଅବ୍ୟକ୍ତ ଲୀଳା ବ୍ୟକ୍ତ ହୁଏ । ମାନବୀୟ ଦୃଷ୍ଟିକୋଣରୁ ବିଗ୍ଭର କରି ଗୌଡ଼ୀୟ ବୈଷ୍ଣବମାନେ ପରମ ପୁରୁଷର ପରମା ପ୍ରକୃତି ସହିତ ନିତ୍ୟଲୀଳାକୁ ମର୍ତ୍ତ୍ୟ ବୃନ୍ଦାବନରେ ପ୍ରକଟ କରାଇ ଆଆନ୍ତି । ଲୀଳା ପୁରୁଷୋତ୍ତମଙ୍କର ନିତ୍ୟଲୀଳା ମାଧ୍ୟମରେ ମାନବ ପ୍ରାଣର ଚିରନ୍ତନ ଆଶା ଓ ଆକାଙ୍କ୍ଷା, ଆକୁଳ ମର୍ମବେଦନା ପରିପ୍ରକାଶ ଲଭିକରିଛି । ଏହି ପ୍ରକୃତି ପୁରୁଷର ସମ୍ପର୍କରେ ମଧ୍ୟ ଜୀବ ପରମର ସମ୍ପର୍କ କଳ୍ପନା କରାଯାଇଛି । କବି ଅଭିମନ୍ୟୁ କାବ୍ୟ ଆରମ୍ଭରେ ପ୍ରକୃତି ପୁରୁଷର ଅଭିନ୍ନତା ସୂଚାଇ ଚୈତନ୍ୟ-ଚନ୍ଦ୍ରଙ୍କର କଳ୍ପନା କରିଛନ୍ତି । କାରଣ ସେ ହେଉଛନ୍ତି ଉଭୟର ସମାହାର । ତେଣୁ "ଏକ ଜୀବ ବେନିଫାଳ ଯୁଗଳ ଅଙ୍ଗରେ ।" ଲୀଳା ପୁରୁଷୋତ୍ତମ କୃଷ୍ଣ ମହାଭାବ ସ୍ୱରୂପିଣୀ ରାଧାଙ୍କ ସହ ରାସ ରଚନାକରି ଯେଉଁ ମାଧୂର୍ଯ୍ୟରସ ସୃଷ୍ଟିକଲେ, ତାହାର ପ୍ରତୀକ ହେଉଛନ୍ତି ଶ୍ରୀଚୈତନ୍ୟ । ସେଥିପାଇଁ ଚୈତନ୍ୟଙ୍କୁ ମାଧୂର୍ଯ୍ୟ ପୁରୁଷୋତ୍ତମ କୁହାଯାଏ ।

କାବ୍ୟର ବିଶିଷ୍ଟପଦରେ କବି ଅଭିମନ୍ୟୁ କୃଷ୍ଣଙ୍କୁ "ଆଦି ଅନାଦି କାରଣ ନିର୍ଗୁଣ ସଗୁଣ, ଆତ୍ମାରାମ ସନାତନ ବ୍ରହ୍ମନିରୂପଣ" ବୋଲି କହିଛନ୍ତି । ଭଗବାନ ପରମ୍ବ୍ରହ୍ମ ଅବସ୍ଥାରେ ଗୁଣାତୀତ ଅବସ୍ଥାରେ ଥାନ୍ତି । ସେତେବେଳେ ସେ ସ୍ୱୟଂ ସମ୍ପୂର୍ଣ୍ଣ ।

"ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣ ମାଦାୟ ପୂର୍ଣ୍ଣ ମେବାବଶିଷ୍ୟତେ ।"
(ବୃହଦାରଣ୍ୟକ ଉପନିଷଦ)

କିନ୍ତୁ ଅବତାର ଗ୍ରହଣ ସମୟରେ ସତ୍ତ୍ୱ, ରଜ, ତମ, ଏହି ତିନିଗୁଣକୁ ଧାରଣ କରି "ମାୟା ବିଧୃତ କଳେବର" ହୁଅନ୍ତି । ଭଗବାନ ସମସ୍ତ ସୃଷ୍ଟିର କାରଣ ବା ମୂଳାଧାର । ସେଥିପାଇଁ ଗୀତାରେ କୁହା ଯାଇଛି—

"ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ ।"

ବ୍ରହ୍ମସଂହିତାରେ ଭଗବାନଙ୍କର ଆଦିତ୍ୱ, ଅନାଦିତ୍ୱ ଓ ଓ କାରଣତ୍ୱ ବିଷୟରେ କୁହାଯାଇଛି—

"ଈଶ୍ୱର ପରମଃ କୃଷ୍ଣଃ ସଚ୍ଚିଦାନନ୍ଦ ବିଗ୍ରହଃ
ଅନାଦିରାଦି ଗୋବିନ୍ଦଃ ସର୍ବ କାରଣ କାରଣଃ ।"

ସମଗ୍ର ଜଗତରେ ସେ ହେଉଛନ୍ତି ସେବ୍ୟ ଓ ଆଉ ସମସ୍ତେ ସେବକ । ତାଙ୍କର ଭ୍ରୂକୁଟି ସଂଚାଳନ ମାତ୍ରେ ଜଗତର ଉତ୍ପତ୍ତି, ପାଳନ ଓ ପ୍ରଳୟ ସୃଷ୍ଟି ହୁଏ । ସେ ଇଚ୍ଛାଶକ୍ତି ବଳରେ କାଳେ କାଳେ ଉଦ୍‌ଭବ ହୋଇ ଧର୍ମ ସଂସ୍ଥାପନ କରନ୍ତି । ସେ ଲୁବ୍‌ଧକ ତାରକବ୍ରହ୍ମ ଗବହର ଓ ମୁକ୍ତିର ଭଣ୍ଡାର ଲୋଟାଇ ଦେଉଥିଲେ ମଧ୍ୟ ସମୟରେ ଯଶୋଦାଙ୍କ କୋଳପାଇଁ ଅଳିକରି ଭୂମିରେ ଲୋଟନ୍ତି । ଗୋପୀ ବଦନାମ୍ବୁଜ ପିୟୂଷକୁ ଲୋଲୁପ ଦୃଷ୍ଟିରେ ଗ୍ରହି ରହିଥାନ୍ତି । ଏମନ୍ତ ମହିମାବନ୍ତ ପ୍ରେମଭକ୍ତି ରସର ଆକର ଯେଉଁ ରାଧାକୃଷ୍ଣ, ତାହାଙ୍କର ଲୀଳା କୀର୍ତ୍ତନ କରିବାକୁ କବି ଲାଳାୟିତ ହୋଇ ଉଠିଥିଲେ ।

କବି• ଅଭିମନ୍ୟୁ ଭଗବାନ କୃଷ୍ଣଙ୍କୁ ଆଦି, ଅନାଦି, ଈଶ୍ୱର, ନିରଞ୍ଜନ ବୋଲି ସ୍ତବ କରିଥିଲେ ମଧ୍ୟ କୃଷ୍ଣ ଚରିତକୁ ସେ ମୁଖ୍ୟତଃ

ମାନବୀୟ ଦୃଷ୍ଟିକୋଣରୁ ବିଗ୍ରହ କରିଛନ୍ତି । ତେଣୁ ଅଭିମନ୍ୟୁଙ୍କ ଦକ୍ଷିଣ ନାୟକ କୃଷ୍ଣ, ବିଦଗ୍ଧ, ମାଧୂର୍ଯ୍ୟମୟ ଓ କିଶୋର । ଆଉ ସମର୍ଥା ନାୟିକା ରାଧା, ମାଧୁରୀମୟୀ ଓ କିଶୋରୀ । ଏମାନଙ୍କ ମଧ୍ୟରେ ପ୍ରୀତି ପରକୀୟା ।

ବିଦଗ୍ଧ ଚିନ୍ତାମଣିରେ କବି କୃଷ୍ଣଙ୍କର ବାଳଲୀଳାକୁ ଅତି ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି । କିନ୍ତୁ କୃଷ୍ଣଙ୍କର ପୌଗଣ୍ଡ କାଳ ଅନ୍ତରେ ନବକିଶୋର ବୟସ ଆଗତ ହୁଅନ୍ତେ ବିଦଗ୍ଧକବି ତାଙ୍କର ସ୍ୱଭାବ ସୁଲଭ ବର୍ଣ୍ଣନା କରିବାକୁ ମୁଖର ହୋଇ ଉଠିଛନ୍ତି । ଗୌଡ଼ୀୟ ବୈଷ୍ଣବମାନଙ୍କ ମତରେ କିଶୋର କାଳ ହେଉଛି ଉତ୍କୃଷ୍ଟ ବୟସ । ତେଣୁ କାବ୍ୟର ତୃତୀୟ ଛାନ୍ଦରେ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କର ବହୁବିଧ ଉକ୍ତି—ପ୍ରତ୍ୟୁକ୍ତି ମଧ୍ୟରେ 'କୈଶୋର ଗୁରୁ ଯେ ଭଙ୍ଗିମାବାର' ତାହା ପ୍ରମାଣ କରାଇଛନ୍ତି ।

କୃଷ୍ଣ କୈଶୋର ଅବସ୍ଥା ପ୍ରାପ୍ତ ହୁଅନ୍ତେ ତାଙ୍କଠାରେ ଶୋଭା ବିଶେଷ ଦେଖାଦେଲା । କିନ୍ତୁ ଅଭିମନ୍ୟୁଙ୍କର କୃଷ୍ଣଙ୍କ ରୂପ ବର୍ଣ୍ଣନା ଯେତେ ପରିମାଣରେ ଭାବୋଦ୍ଦୀପକ ନହୋଇଛି ତତୋଧିକ ପରିମାଣରେ କାମୋଦ୍ଦୀପକ ହୋଇଛି । କବି କୃଷ୍ଣଙ୍କ ମୂର୍ତ୍ତିକୁ ଯେପରି ଭାବରେ ନିର୍ମାଣିଛନ୍ତି, ସେ ସତରେ ନାଗରୀ ମାନଙ୍କ ହୃଦ ସରସୀକୁ ଚହଲାଇବାର କଥା । କୃଷ୍ଣଙ୍କ ଅଙ୍ଗରେ ଲାବଣ୍ୟ ବିଳାସ ବର୍ଣ୍ଣିବାକୁ ଯାଇ କବି ଲେଖିଛନ୍ତି—

"ସଂସାର ସାର କାନ୍ତିକି ଆଣିଲା,
ଅମୃତ ମିଶାଇ ବାଟି ଗୁଣିଲା
ବିହିଏ ମୁରତିକି ନିର୍ମାଣିଲା,

ମର୍କତ ରସାଣରେ ରସାଣିଲା ସେ
ଉପମା ସୃଷ୍ଟି ଜଣିଲା ଯେ
ମୋହନ ମନ୍ତ୍ରରେ ଜୀବନ୍ୟାସ କରି
ସାର ସଂସାରେ ଗଣିଲା ଯେ ";

ଏଥିରୁ ଶ୍ରୀକୃଷ୍ଣଙ୍କ ଅଙ୍ଗର କାନ୍ତିମୟୂଖ, ମନୋହାରିତା, ମାଳମାର ଅତୁଳମାଧୁରୀ ଓ ଚିତ୍ତ ବିମୋହକତା ସୂଚିତ ହେଉଛି । ତେଣୁ ଏପରି ପୁରୁଷ ପୁଙ୍ଗବକୁ ଦେଖି କେଉଁ ରମଣୀ "ଆରତି ହୋଇକେ, ସୁରତ ଇଚ୍ଛାରେ କରିବ ନାହିଁ ପୀରତି ଯେ ?" କୃଷ୍ଣଙ୍କର ଭ୍ରୂଲତା କାମ ସାରଙ୍ଗ । ସେଥିରେ ସେ ତରଙ୍ଗ ଖେଳାଇ କୁରଙ୍ଗକୁ ଜଣିଛନ୍ତି । ଆଉ ସ୍ମିତ ସୁଧା ଦୃଷ୍ଟିରେ ସେ ଘନରସ ଭରି ନାଗରୀମାନଙ୍କ ହୃଦ ସରସୀକୁ ଉଚ୍ଛୁଳାଇ ଦିଅନ୍ତି । ସେ ବାଳକ ସଙ୍ଗରୁ ମନ ତୁଟାଇ, ସମବୟଙ୍କ ସଙ୍ଗେ ପ୍ରୀତି ଘଟାଇ ଏପରି ଗୁଡୁଗୀ କଥାମାନ କହନ୍ତି—ଫଳରେ, ପତିବ୍ରତା-ମନ ଧୃତି-ସମ୍ପତ୍ତିକ ସମୂଳ ଲୁଟି କରନ୍ତି । ସେ ମନ୍ଦହାସରେ ଭାଷା କହନ୍ତି । ଇଙ୍ଗିତ ରଙ୍ଗରେ ନେହ ଠାରନ୍ତି । ପ୍ରୀତି ଗୀତ ଗାନକରି ମତ୍ତ ବୃଷଭ ଭଳି ଗତିକରି ଗଜଗମନା ନାରୀଙ୍କର ମନ ମୋହନ୍ତି । ନିଜର ତନୁକୁ ଯତ୍ନ କରିବାରେ ଦିନକୁ ଦିନ ମନବଳାବାରୁ ଯେ ଦ୍ରବ୍ୟ ସୁମନ, ରଙ୍ଗ ପୀତବସନ, ପାନ ଚନ୍ଦନ ପ୍ରତି ଲୋଭ ବଳାଇଲେ । ନବ ଯୁବତୀ ପ୍ରେମ ଲମ୍ପଟରେ ଗୁଡି ଫୁଲାଇ ସେ ବାଟ ଚାଲନ୍ତି । କାହା ମନକୁ ନାଟରେ ହରନ୍ତି । କାହା ପଟରେ କଣ୍ଟୁର ବୋଳନ୍ତି ଓ କାହାପାଇଁ ଜଳଘାଟରେ ଜଗି ବସନ୍ତି । ତେଣୁ ଏ ଗଣ୍ଡିଆ କୃଷ୍ଣ, କାହା କଟୀତଟ ମାଠିଆକୁ ଦେଖି କହନ୍ତି— ଲୋ ସଖୀ ! ମୁଁ ତୋ ବେଠିଆ, ମୋତେ ତୁ ପାଣି ଆଣିବାକୁ

ପଠିଆ । ସ୍ଥାନେ ସ୍ଥାନେ କବି ଦିବ୍ୟ ଭାଷା ସହିତ 'ଅଦିବ୍ୟ' ଭାଷା ସଂଯୋଗ କରିଥିଲେ ମଧ୍ୟ ସ୍ଥାନ ବିଶେଷରେ ଏହା ଅତି ଶ୍ରୁତିକଟୁ ହୋଇଛି । ଯଥା—

"କରରେ ଦେଇ କର ପଇଠିକି, କହୁଛନ୍ତି କୃଷ୍ଣ କଉଁ ପେଣ୍ଠିକି
ତୁ ମୋର ସମାନ ହୃଦ କଣ୍ଠିକି , ମନେ ନରଖିବୁ କଥା ଗଣ୍ଠିକି
ମୋର ଜାନୁ ବଇଠିକଯେ
ଦେଲି ବକେକର, ମହାଦେବୀ ! ମୋର
ନଦିଅ ଲାଜେ ପିଠିକି ଯେ ।"

ଏତଦ୍‌ବ୍ୟତୀତ ସ୍ଥାନେ ସ୍ଥାନେ କୃଷ୍ଣଙ୍କସହ ଗୋପୀକାଙ୍କ ଛଳୋକ୍ତି ଅଶ୍ଳୀଳତା ଦୋଷରେ ଦୋଷଯୁକ୍ତ । ଏଥିରୁ ଶୃଙ୍ଗାରର ସୂଚନା ମିଳିଲେ ମଧ୍ୟ, କୃଷ୍ଣ ନାଗର ଓ ଗୋପୀ ନାଗରୀ ଏହା ସୂଚୀତ ହେଉଥିଲେ ମଧ୍ୟ, ଏହା କୃଷ୍ଣଙ୍କ ଚରିତ୍ରିକ ମହତ୍ତ୍ୱ ବୃଦ୍ଧି ନକରି ବରଂ ହ୍ରାସ କରିଥାଏ ।

"କୃଷ୍ଣ ଧରିଲେ ଯେ ଗୋପୀଙ୍କ କର,
ବୋଇଲେ ମୁଁ ତୁମ୍ଭ କିଣାକିଙ୍କର
କର-ସାରେଣୀ ପରି ମୋତେ କର,
ସମାନ ମୂର୍ତ୍ତି ପଦ ଯାବକର ଯେ
ତୁମ ବଚନ ଶୀକର ଯେ,
ବିନା ମୋ କାମନା ଆଉ ନାହିଁ ବିନ୍ଧ
ଛୁଉଁଛି କୁଚ-ଶଙ୍କର ଯେ ।"

ଏସବୁଥିରୁ ଜଣାଯାଏ, କୃଷ୍ଣ ଜଣେ ଗଣ୍ଠିଆ ବା ଦକ୍ଷ ପ୍ରେମିକ ଓ ପ୍ରେମ କରିବାର ସମସ୍ତ କୌଶଳ ତାଙ୍କୁ ଜଣାଥିଲା । କୃଷ୍ଣଙ୍କର ଏତାଦୃଶ ବର୍ଣ୍ଣନା ସ୍ୱର୍ଗୀୟ ପ୍ରେମର ସୂଚନା ନଦେଇ ହୃଦୟରେ କାମଭାବ ଉଦ୍ରେକ କରେ ।

ବିଂଶ ଛାନ୍ଦରେ କବି ନାୟିକା ରାଧାଙ୍କ ସ୍ଥିତି କୃଷ୍ଣଙ୍କୁ ଯୋଗମାୟାଙ୍କ ଦ୍ୱାରା ଅପହରଣ କରାଇ ରାଧାଙ୍କ ଶୟନ ସ୍ଥାନରେ ପହଞ୍ଚାଇଛନ୍ତି । ରାଧାଙ୍କର ନିଦ୍ରିତାବସ୍ଥା ଅସଯତ୍ନ ସୌନ୍ଦର୍ଯ୍ୟକୁ ଦେଖି କୃଷ୍ଣଙ୍କର ଯେଉଁ ଭାବାନ୍ତର ହୋଇଛି ତାହା ଇତରମାନବୋଚିତ । ରାଧା ଦର୍ଶନରେ ସାତ୍ତ୍ୱିକ ଭାବ ଯେତେ ପ୍ରକଟିତ ନହୋଇଛି, କାମୁକତା ସେହି ତୁଳନାରେ ଅତ୍ୟଧିକ ପ୍ରକାଶିତ ହୋଇଛି । ଅବଶ୍ୟ ରାଧାଙ୍କର ପ୍ରଥମ ଦର୍ଶନରେ କୃଷ୍ଣ ତାଙ୍କର ଦିବ୍ୟଜ୍ୟୋତିଯୁକ୍ତ ଅଙ୍ଗପ୍ରଭାର ସନ୍ଧାନ ପାଇଛନ୍ତି । ତେଣୁ ତାଙ୍କୁ 'କାନ୍ତକୁଳ ଦେବୀ' ବୋଲି ଗ୍ରହଣ କରିଛନ୍ତି । କୃଷ୍ଣ ରାଧାଙ୍କୁ ଗର୍ଭମୁକ୍ତ ଦାସି ବୋଲି ସ୍ଥିର କରିଛନ୍ତି । ତେଣୁ ସେ ଭାବିଛନ୍ତି—

"ବର୍ଣ୍ଣନପର ଗର୍ଭକରି ମୁକୁତିକି ଗତିକରି
ଶାନ୍ତି ପାଇଁ ପହୁଡ଼ିଛି ସମ୍ଭବେ ଏହି
ସିଦ୍ଧିଦାୟୀ କି କରିବାଟି,
ନାଥ ରୂପାକୁ ହୋଇବ କି ଲକ୍ଷିବାର ।"

ଏହାପରେ କେତୋଟି ପଦ ଛାଡ଼ିଦେଲେ ଅନ୍ୟାନ୍ୟ ସ୍ଥାନରେ କୃଷ୍ଣଙ୍କର ପ୍ରେମ ଲାଳସା ଅତ୍ୟଧିକ ପରିମାଣରେ ଦେଖିବାକୁ ମିଳେ । କୃଷ୍ଣ ରାଧାଙ୍କର ଶୟନାବସ୍ଥାରେ ତାଙ୍କର ସଞ୍ଚ ଘଞ୍ଚ ଉଚ

କୃତକୁ ମଦନ ମାଦକ ସ୍ଥଳ, ଚିତ୍ତ ବିମୋହନ ଫଳବୋଲି ଭାବି ଅତି ଆତୁର ହୋଇ ପଡ଼ନ୍ତନ୍ତି ଓ ରାଧା ସ୍ୱୀକାର କରୁ ବା ନକରୁ ତା କଳେବର ଛୁଇଁବି, ଏହିକଥା ଭାବି ଆତୁର ହୋଇ 'ଧୀରୁ ଧୀରୁ ଉରୁ ଧରି ଦେଲେ ଝୁଲାଇ।' ଇତର ମାନବୋଚିତ ବ୍ୟବହାର ତଥା କାମୁକତା କୃଷ୍ଣଙ୍କ ଚରିତ୍ରରେ କଳଙ୍କ ବୋଲାଉଛି। ରାଧାଙ୍କର ମାଆ ପିଥାକୁ କୃଷ୍ଣ ମାରି ଘରି ଘରି ତୈଲଙ୍ଗୀ କୁଞ୍ଜ ବୋଲି ନଭାବି ଛାଡ଼ ନାହାନ୍ତି। ଏହିଭଳି ଅନେକ ବର୍ଣ୍ଣନା ଯାହାକି ଏକାଧାରରେ ଅଶ୍ଳୀଳ ଓ ଗ୍ରାମ୍ୟ। ଏଥିପାଇଁ ଅଭିମନ୍ୟୁଙ୍କୁ ସଂପୂର୍ଣ୍ଣ ଦୋଷାରୋପ କରାଯାଇ ନପାରେ। କାରଣ ଏ ଛାନ୍ଦରେ ଉପେନ୍ଦ୍ର ଅନୁକୃତି ଯଥେଷ୍ଟ ପରିମାଣରେ ବେଶୀ। ତେଣୁ କୃଷ୍ଣଙ୍କ ଚରିତ ଯେଉଁ ପରିମାଣରେ ଆଦର୍ଶ ସ୍ଥାନୀୟ ହୋଇପାରିବାର କଥା, ତାହା ହୋଇ ପାରିନାହିଁ। 'ଶ୍ରୀରାଧା ବାଉଲୀ, ଧୀରେ ଘେନ କାନନରେ' ଏହିପରି ଅନେକ ଛାନ୍ଦ ଅଛି, ଯେଉଁଥିରେ ଅଭିମନ୍ୟୁଙ୍କ ଚରିତ୍ର ଚିତ୍ରଣର ମହନୀୟତା ଅନେକ ପରିମାଣରେ ସମ୍ଭବ ହୋଇ ପାରିଛି। କବି ସେହିପରି ୩୯ ଓ ୪୨ ଛାନ୍ଦରେ ପ୍ରେମତତ୍ତ୍ୱ ବ୍ୟାଖ୍ୟାକରି ଉଭୟ କୃଷ୍ଣ ଓ ରାଧା ଚରିତ୍ରର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି। ରାଧାଗତପ୍ରାଣା କୃଷ୍ଣଙ୍କର ଗଭୀର ଅନାବିଳ ପ୍ରେମ ପାଠକ ଚିତ୍ତକୁ ଆକୃଷ୍ଟ କରେ ଓ ସ୍ୱର୍ଗୀୟ ଭାବରେ ନମସ୍କମାନ କରେ। ସେଥିପାଇଁ ରାଧାଙ୍କ ବିରହରେ କୃଷ୍ଣ କହିଛନ୍ତି—

"ଶ୍ରୀଟପ ସଂସ୍କୃତ ସାକ୍ଷୀନ ଅଛି।
ଶଶୀ ତନୁକୁହିଁ ଶଶ ପାଇଛି
ମରଣ ଭୟ ନୋହିଲା ଏଥିକି,
ହାତଧରି ମୁଁ ମାଗୁଛି ଏତିକି

ଜୀବ ଗଲେ ଶବ ହେ
ତା ଗତ ପଥରେ ପୋତାଇ ଥିବ ।''

ଏହା ମଧୁମଙ୍ଗଳ ଶୁଣି—
''ଏମନ୍ତ ବାଞ୍ଛିତ ମିତ ଶୁଣନ୍ତେ,
ପ୍ରେମ ଲୋଭକୁ ପ୍ରଶଂସିଲେ ଚିତ୍ତେ ।''

ଏଭଳି ପ୍ରେମରେ ମିତଯେ କେବଳ ପ୍ରଶଂସା କରିବେ ତାହା ନୁହେଁ ଯେ କୌଣସି ବ୍ୟକ୍ତି ମଧ୍ୟ ପ୍ରଶଂସା କରିବ । ଶେଷରେ ଏତିକି କୁହାଯାଇପାରେ—ଅଭିମନ୍ୟୁଙ୍କ କୃଷ୍ଣ ବିଦଗ୍ଧ, କିଶୋର, ନବୀନ, ପ୍ରଗଳ୍ଭ ରତିପ୍ରିୟ ବ୍ୟାକୁଳ ବିହ୍ୱଳ, ରଙ୍ଗରସ ନିପୁଣ, ପ୍ରତିଭାବାନ, ରୂପ ଯୌବନ ଦୃପ୍ତ, ଭଙ୍ଗି ଚତୁର ଓ ରସିକ ।

ଅଭିମନ୍ୟୁ ସ୍ୱକାବ୍ୟ ବିଦଗ୍ଧ ଚିନ୍ତାମଣିରେ ରାଧାଙ୍କ ଚରିତକୁ ଅତି ସାବଧାନତାର ସହ ଚିତ୍ରଣ କରିଛନ୍ତି । ପ୍ରଥମରୁ ସ୍ମରଣ ରଖାଯାଇପାରେ ଯେ ଏହି 'ରାଧା' ଚରିତଟି ବହୁ ପରେ ଗୌଡ଼ୀୟ ବୈଷ୍ଣବଶାସ୍ତ୍ର ମାନଙ୍କରେ ଦେଖାଦେଲା । ପୁରାଣ ସାହିତ୍ୟକୁ ଲକ୍ଷ୍ୟକଲେ ଜଣାଯାଏ ଯେ ମହାଭାରତ, ଭାଗବତ ହରିବଂଶ, ବିଷ୍ଣୁପୁରାଣର କୌଣସି ସ୍ଥାନରେ ରାଧା ନାମର ଉଲ୍ଲେଖ ନାହିଁ । ଅଷ୍ଟାଦଶ ପୁରାଣ ମଧ୍ୟରେ କେବଳ ବ୍ରହ୍ମବୈବର୍ତ୍ତ ଏବଂ ଦେବୀ ଭାଗବତରେ ରାଧାଙ୍କର ବର୍ଣ୍ଣନା ମାତ୍ର ଯାହା ଦେଖାଯାଏ । କିନ୍ତୁ ଏହି 'ରାଧା' ଗୌଡ଼ୀୟମାନଙ୍କର ରାଧା ନୁହଁନ୍ତି ବା ପରକୀୟା ପ୍ରେମର ଉପାସିକା ନୁହଁନ୍ତି—ସେ ହେଉଛନ୍ତି କୃଷ୍ଣଙ୍କ ବିବାହିତା ସ୍ତ୍ରୀ । ହରିବଂଶ, ପଦ୍ମପୁରାଣ, ବିଷ୍ଣୁପୁରାଣରେ ଗୋପୀଙ୍କ କଥା ଥିଲେ ମଧ୍ୟ ରାଧାଙ୍କ ନାମ ପର୍ଯ୍ୟନ୍ତ ନାହିଁ । ମହାକବି

ଭାସ ତାଙ୍କର 'ବାଳଚରିତମ୍' ନାଟକରେ ଗୋପିମାନଙ୍କ ବର୍ଣ୍ଣନା ଦେଇଛନ୍ତି କିନ୍ତୁ ସେଠାରେ ବି ରାଧା ନାହାଁନ୍ତି । ଏହା ପ୍ରାୟ ତୃତୀୟ ଶତକ ବା ପୂର୍ବର ଲେଖା । ଖ୍ରୀଷ୍ଟିୟ ଦଶମ ଶତକରେ ଲେଖା ଯାଇଥିବା 'ଭାଗବତ'ପରେ ଓ ଦ୍ୱାଦଶ ଶତାବ୍ଦୀରେ ଜୟଦେବଙ୍କ ପୂର୍ବରୁ, ବ୍ରହ୍ମବୈବର୍ତ୍ତ ପୁରାଣ ରଚନା କରା ଯାଇଥିଲା । ଏଥିରେ 'ରା' ଓ 'ଧା'ର ସମଷ୍ଟିରେ ରାଧାନାମ ଗଠିତ ବୋଲି ସୂଚାଇ ଦିଆ ଯାଇଛି ।

'ରା' ଅକ୍ଷର ଉଚ୍ଚାରଣ କରି ଭକ୍ତଗଣ,
ଅଲଭ୍ୟେ ଲଭନ୍ତି ମୁକ୍ତିମାର୍ଗ ଦରଶନ ।
'ଧା' ଅକ୍ଷର ଉଚ୍ଚାରଣେ ଶ୍ରୀହରିଙ୍କ ପୁରେ,
ଧାବନ କରନ୍ତି ସେହିପରି ନିରନ୍ତରେ ।''

(ପ୍ରକୃତି ଖଣ୍ଡ ୫୬ ଖଣ୍ଡ ଅଧ୍ୟାୟ )

ସଂସ୍କୃତ ବ୍ରହ୍ମବୈବର୍ତ୍ତ ପୁରାଣରେ ମଧ୍ୟ ଠିକ୍ ଏହାହିଁ ଲେଖା ଯାଇଛି । ଏହି ପୁରାଣର ପ୍ରଭାବ ଜୟଦେବଙ୍କ 'ଗୀତ ଗୋବିନ୍ଦ'ରେ ପଡ଼ିଥିବାରୁ ଏଥିରେ ମଧ୍ୟ ରାଧା ଦେଖିବାକୁ ମିଳନ୍ତି ।

କେତେକ ବଙ୍ଗୀୟ ସମାଲୋଚକଙ୍କର ମତ ଯେ ସଂସ୍କୃତ ସାହିତ୍ୟରେ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ରାଧା ଶବ୍ଦର ବ୍ୟବହାର ନଥିଲେ ମଧ୍ୟ ଲୋକଗୀତରେ ଏହାର ବ୍ୟବହାର ଥିଲା । ପରବର୍ତ୍ତୀ କାଳରେ ବୈଷ୍ଣବ ଧର୍ମତତ୍ତ୍ୱକୁ ସ୍ପଷ୍ଟରୂପେ ଉପଲବ୍ଧି କରି ନ ପାରି ଅନେକ ବୈଷ୍ଣବ ତାନ୍ତ୍ରିକ ଶାକ୍ତ ଧର୍ମଦ୍ୱାରା ଆକୃଷ୍ଟ ହେଲେ । ତେଣୁ ବୈଷ୍ଣବମାନେ କୌଣସିଠିକୁ ସମ୍ପୂର୍ଣ୍ଣ ଭାବରେ

ଗ୍ରହଣ କରି ନପାରି ବେଦାନ୍ତର ଅଦ୍ୱୈତବାଦ ଓ ସାଂଖ୍ୟର ପ୍ରକୃତି ପୁରୁଷବାଦର ସୁମଧୁର ସମନ୍ୱୟ କରି ଏକ ସଂପୂର୍ଣ୍ଣ ନୂତନ ବୈଷ୍ଣବଧର୍ମର ସୃଷ୍ଟି କଲେ । ଏହି ଧର୍ମରେ ପରଂବ୍ରହ୍ମ ବା ପୁରୁଷ ଅର୍ଥରେ କୃଷ୍ଣ ଗୃହୀତ ହେଲେ ଓ ଏବଂ ପରମବ୍ରହ୍ମ ଭିନ୍ନ ସମସ୍ତ ଜଗତ ତାଙ୍କୁ ଆରାଧନା କରି ରାଧା ହେଲେ । ତେଣୁ ସମସ୍ତ ରାଧାରୂପୀ ପ୍ରକୃତି ମଧ୍ୟରେ ସେ ହେଉଛନ୍ତି ଏକମାତ୍ର ପୁରୁଷ । ଏହି ଭାବ ଦେବଦୁର୍ଲଭ ଦାସଙ୍କ ରହସ୍ୟ ମଞ୍ଜରୀରେ ମଧ୍ୟ ପ୍ରକାଶିତ ହୋଇଛି ।

> • "ସ୍ତ୍ରୀଗଣବୃନ୍ଦ ମଧ୍ୟରେ ପୁରୁଷବର ମୁହିଁ,
> ଯେ ପୁରର ପଶିବ କେ ପୁରୁଷ ଅଙ୍ଗବହି ।
> ମୋହ ବିନୁ ନାହିଁ ତହିଁ ଦୋସର ପୁରୁଷ,
> ସ୍ତ୍ରୀଗଣବୃନ୍ଦ ବେଢ଼ି ମୋର ସେବନ୍ତି ପାରୁଶ ଗୋ ।"

ବୋଧହୁଏ ଜୟଦେବଙ୍କଠାରୁ ସମଗ୍ର ପ୍ରକୃତିର ପ୍ରତୀକ ରୂପେ ରାଧାଙ୍କୁ ଗ୍ରହଣ କରି ପ୍ରକୃତି ସହିତ ପୁରୁଷର ଲୀଳାକୁ ରାଧାକୃଷ୍ଣ ଲୀଳାରୂପେ ବ୍ୟାଖ୍ୟା କରାଯାଇଛି । ତେଣୁ 'ଜାତି' ବାଚକ ରାଧାପରେ 'ନାମ ବାଚକରେ ପରିଣତ ହୋଇଛନ୍ତି ।

କବି ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିରେ ରାଧାଙ୍କୁ ନାୟିକା ଭାବରେ ଚିତ୍ରଣ କରିଛନ୍ତି । ଭୂପତି ପଣ୍ଡିତ ଓ ଦୀନକୃଷ୍ଣଙ୍କ କାବ୍ୟରେ ରାଧାଙ୍କୁ ଯେତିକି ଗୁରୁତ୍ୱ ଦିଆ ନଯାଇଛି, ଅଭିମନ୍ୟୁଙ୍କ କାବ୍ୟରେ ତତୋଧିକ ଗୁରୁତ୍ୱ ଦିଆଯାଇଛି । ରାଧାଙ୍କର ଜନ୍ମ ବୃତ୍ତାନ୍ତ କହିବାକୁ ଯାଇ କବି ତାଙ୍କର ଗୁରୁ ସାଧୁଚରଣ ଦାସଙ୍କ କାବ୍ୟ

ତଥା କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ତେଣୁ ଲେଖା ଅଛି "ଧୀରେ ଯେନ ରାଧାଜନ୍ମାଦି ଉତ୍ସବ ତନ୍ତ୍ର ସାଧୁ ଶାସ୍ତ୍ରେ ଖୋଜିବ", ବୃଷଭାନୁଙ୍କ ମହିଷୀ କୀର୍ତ୍ତିଦାଙ୍କ ଉଦର କ୍ଷୀରସାଗରରୁ ପରମ ମହାଲକ୍ଷ୍ମୀ ରାଧା ଜାତ ହେବାରୁ ଦୁର୍ବାସା ନାମ କରଣ କରିବାକୁ ଯାଇ "ର ରଶ୍ମି ରସ ଅଗ୍ନି ବୀଜ ଅଧିକା ଯେନ ରାଧିକା ନାମ ଦେଲେ ।" ଶ୍ରୀମତ ଉନ୍ନତ ଜାଣି ପୌର୍ଣ୍ଣମାସୀ ଶ୍ରୀମତୀ ନାମ ଦେଲେ, ଜନକ କହିଲେ ସେ ରସବତୀ; ଜନନୀ ନାମଦେଲେ 'ବିନୋଦିନୀ' । ରାଧାଜନ୍ମ ଲଭିକରି ହିରାନ୍ନ ନେଇ ବ୍ରଜ ରହନ୍ତେ ଯଶୋଦା କୃଷ୍ଣଙ୍କୁ ନେଇ ପହଞ୍ଚାଇବାରୁ ସେ ଶୁଭ ସୁଲକ୍ଷଣୀ ପ୍ରଥମେ କୃଷ୍ଣମୁଖ ବିଲୋକନ କଲେ । କ୍ରମେ କ୍ରମେ ବଢ଼ିବାକୁ ଲାଗିଲେ । ବାଡ଼ିଧରି ଚାଲିବାଠାରୁ ବିଦ୍ୟାଶିକ୍ଷା କରିବା ପର୍ଯ୍ୟନ୍ତ କବି ଠିକେ ଠିକେ ବର୍ଣ୍ଣନା କରି ଯାଇଛନ୍ତି । ତାଙ୍କୁ ସ୍ୱୟଂସିଦ୍ଧ ମହାବିଦ୍ୟା ବୋଲି ମଧ୍ୟ କହିଛନ୍ତି । ଅନିନ୍ଦ୍ୟ ସୁନ୍ଦରୀ ରାଧାଙ୍କର "ଶ୍ରୀମୁଖ, ସ୍ୱେଦ ଜଳତେ କି ସୁନ୍ଦର, ମୃଗାଙ୍କ ଅଙ୍କୁର ଅମୃତ ବିନ୍ଦୁକି ପ୍ରତି ଲୋମଦ୍ୱାରେ ପ୍ରଚୁର ।" "ଗଉରୀ ରୋହିଣୀ ବପୁ ଅତିକ୍ରମି କନ୍ୟା ସନ୍ଧିକାଳ" ହେଲାପରେ କବି ଯେପରି ଭାବରେ ରାଧାଙ୍କର ରୂପ ବର୍ଣ୍ଣନା କରିଛନ୍ତି ତାହା ଅତିମାତ୍ରାରେ କାମଭାବ ଉଦ୍ରେକକାରୀ । ତାହା ହେଲେମଧ୍ୟ ଅଭିମନ୍ୟୁ ରାଧାଙ୍କୁ 'ବିଶ୍ୱବିଜୟିନୀ ଭବାବ୍ଧି ତାରିଣୀ'' ବୋଲି କହିଛନ୍ତି ।

ଭକ୍ତକବି ଅଭିମନ୍ୟୁ ଯେଉଁ ଭାବନେଇ ଲେଖନ୍ତୁ ନା କାହିଁକି ତାଙ୍କର ବର୍ଣ୍ଣନାରୁ ସୂଚିତ ହୁଏ ଯେ, ରାଧାଙ୍କର ମୁଖ୍ୟ ଉଦ୍ଦେଶ୍ୟଥିଲା କୃଷ୍ଣଙ୍କ ସହିତ ଦୈହିକ ମିଳନ । ରାଧାଙ୍କର କାମଭାବ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ମଣାନିବ ବନ୍ଧନ ଫିଟାଇ ଦର୍ଶନ
ହୋଇଲା ମୋର ହୃଦର ଉଦର
ଘଞ୍ଚ ସହିତ ନୋହିବ ନଷ୍ଟପୁ ଦହିବ ମାରିକର ଫୁଲଶର।"

ରାଧାଙ୍କର ବିରହବ୍ୟଥା ଏତେ ପ୍ରବଳ ହୋଇ ପଡ଼ିଛି ଯେ, ଘନସାର ଉଷୀର ଚନ୍ଦନ ପ୍ରଭୃତି ଶୀତଳ ଉପଚାରର ଆବଶ୍ୟକତା ଅନେକାଂଶରେ ବଢ଼ି ଯାଇଛି । ଏପରିକି ବିଂଶ ଛାନ୍ଦରେ ଚନ୍ଦ୍ରଙ୍କୁ ଦେଖି କୃଷ୍ଣଚନ୍ଦ୍ର ବୋଲି ଭାବି ନିଜର ବାହୁରେ ସ୍ତନ ଯୁଗଳକୁ ଲୁଚାଇବାକୁ ଚେଷ୍ଟା କରିଛନ୍ତି ।

"ହରିକି ବରିବି ହରି କର ବିକ୍ଷେପନେ ଉର ବାହୁ କମ୍ପିତ, ଘୋଡ଼ାଇଦେଲେ ଉରଜ । ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ରାଧାଙ୍କର ଅବଚେତନା ମନରେ ସର୍ବଦା କାମଭାବ ଜାଗ୍ରତ ହେଉଥିଲା । ସପ୍ନନେ ସ୍ପର୍ଶନେ କିମ୍ବା ଜାଗରଣେ କୃଷ୍ଣ ମିଳନ ଥିଲା ଜୀବନର ପରମ ଲକ୍ଷ୍ୟ । ଏହା ହେଲେ ମଧ୍ୟ ରାଧାଙ୍କ କାମନାର ଗାମ୍ଭୀରତା ଓ ସାତ୍ତ୍ୱିକତା ଅନେକ ପରିମାଣରେ ଅନୁଭୂତ ହୁଏ ତେଣୁ କିଂଶାଖି ରାଧା ସମ୍ମୁଖରେ କିଶୋର କୃଷ୍ଣଙ୍କୁ ଦେଖି 'ବଶ ମାନସରେ ମନାସେ; ଜୀବକି ପରମେ ମନ ପୁରୁଷେ ମିଶେ ।" ଜୀବାତ୍ମାର ପରମାତ୍ମା ସହିତ ମିଳନ ରାଧାଙ୍କର ଥିଲା ଐକାନ୍ତିକ କାମନା । କିନ୍ତୁ ଏଠାରେ ଆହୁରି ଟିକିଏ ଲକ୍ଷ୍ୟ କରିବାର କଥା । ଏପଦରେ ସ୍ୱୟଂ କବି ଅଭିମନ୍ୟୁ ରାଧାଙ୍କ ଦ୍ୱାରା ଦେଇ ନିଜେ ପରମ ପୁରୁଷ ସହିତ ମିଳିତ ହେବାକୁ ଆଶା ପୋଷଣ କରିଛନ୍ତି ।

ସପ୍ତବିଂଶ ଛାନ୍ଦରେ କୃଷ୍ଣଙ୍କ ନିକଟରେ ଦୂତୀ ମୁଖରେ ରାଧାଙ୍କର ଚରିତ୍ର ଫୁଟାଇବାକୁ କବି ଚେଷ୍ଟା କରିଛନ୍ତି । ଦୂତୀ କହୁଛି ସେ ରାଧା ହେଉଚନ୍ତି—

"ବିବେକୀ ଶାନ୍ତା ସୁଶୀଳା ଅଖିଳା ।
ବିଶେଷ ମଦନଶାସ୍ତ୍ର କୁଶଳା,
ବଡ ତାର୍କିକୀ ସ୍ୱଜନ ବତ୍ସଳା,
ବାରିନିଧିରୁ ଗମ୍ଭୀର ଛଇଳା ସେ
ବାଳାସୁଧା ସ୍ୱାଦୁ ଭାଷୀଯେ
ବରପରସନ୍ମାନନୀ ଆହ୍ଲାଦିନୀ    ମନ୍ଦ ଝଟକ ସୁହାସୀଯେ ।"

କବି ରାଧାଙ୍କୁ କେତେବେଳେ ଅଭିସାରିକା କେତେବେଳେ ବିରହୋତ୍କଣ୍ଠିତା ଓ କେତେବେଳେ ବାସକ ସଜ୍ଜା ନାୟିକା ରୂପେ ଚିତ୍ରଣ କରିବାକୁ ଭୁଲି ନାହାଁନ୍ତି । କୃଷ୍ଣ ବିରହ କାତର ପରକୀୟା ନାୟିକା ରାଧା ମୁଗ୍‌ଧା ନାୟିକା ରୂପେ ଦିବାରାତ୍ର ବିହ୍ୱଳିତ ମନ୍ତରେ—

"ରସି ମଦାଳସୀ    ସୁମନା ତୁଳସୀ
ଗନ୍ଧକର ଧେନୁ ଥାଇ ନିତି ।
କସ୍ତୁରୀ ପତ୍ରକ    କରିବା ଚିତ୍ରକ
ବୋଲୁ ସଖୀ ରହେ ମୁଖପୋତି
କାମ ମୋହନ ହେ ।
କରୁଛି ନିତି ଶାସ୍ତ୍ର ପଠନ ।

ଦେଖିଲେ କେତକୀ    ବୋଲେଏ ପାତକୀ
ହେଲି କପାଁ ଭୃଙ୍ଗ ବିମୋହନ ।"

ଉନଚତ୍ୱାରିଂଶ ଛାନ୍ଦରେ ଶ୍ରୀରାଧାଙ୍କର ଐକାନ୍ତିକ ପ୍ରେମର ଏକ ଜ୍ୱଳନ୍ତ ଉଦାହରଣ ଦେବା ସଙ୍ଗେ ସଙ୍ଗେ କବି ରାଧାଙ୍କ ଚରିତ୍ରକୁ

ଅତି ସୁନ୍ଦର ଭାବେ ବିଶ୍ଳେଷଣ କରିଛନ୍ତି । ଗୋବିନ୍ଦଙ୍କର ପ୍ରୀତି ଲାଭକରି ନପାରି ଧୀରରନ୍ନି ଶ୍ରୀରାଧା ସଖି ବିଶାଖାଙ୍କୁ ପଚାରିଛନ୍ତି— "କହ ପିରିତି କି ଜାତି ପଦାର୍ଥ ?" ଏଥିରୁ ରାଧାଙ୍କର ଶିଶୁ ସୁଲଭ ସରଳତା ଜଣାଯାଏ ନାହିଁକି ? "କେଉଁ ଗ୍ରାମରେ ଗୋ ପିରିତି ନାହିଁ ? ବା "ପ୍ରୀତି ପାଶୋରି ମନ୍ତ୍ର ଅଛିନା ?" ଭଳି ପ୍ରଶ୍ନକଲେ ରାଧା ଯେ ଅନଭିଜ୍ଞ ଏଥିରୁ ସହଜରେ ଜଣାଯାଏ । ଏଠାରେ ମଧ୍ୟ ରାଧାଙ୍କର ଐକାନ୍ତିକତା ଓ ଏକନିଷ୍ଠତା ପ୍ରକାଶ ପାଏ ସେଥିପାଇଁ ଜୀବନକୁ "ଶ୍ୟାମନାମ ଧରି, ଯା ଅନୁକୂଳ କରି ବାହାରି" ବୋଲି କହିଛନ୍ତି । ଖାଲି ସେତିକି ନୁହେଁ, କୃଷ୍ଣଗତପ୍ରାଣା ରାଧା ଜୀବନ କାଳ ମଧ୍ୟରେ କୃଷ୍ଣ ଦର୍ଶନ ଆଉ ସମ୍ଭବ ନହେଲେ ମୃତ୍ୟୁପରେ ତାଙ୍କର ସ୍ପର୍ଶ ମଧ୍ୟ କାମନା କରିଛନ୍ତି ।

"ଜୀବନ ଗଲେ ଏତିକି କରିବ,  
ଶ୍ୟାମ ନାମ ମୋହର ହୃଦେ ଲିଖିବ  
ଶ୍ୟାମମୂର୍ତ୍ତି ରୂପ ହୃଦେ ଲଗାଇ,  
ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ  
ଶ୍ୟାମ ଗତି ପଥେ, ମୋ ଶବ ପୋତିବ ଆପଣା ହାତେ ।"

ମୋଟ ଉପରେ କହିବାକୁ ଗଲେ ଅଭିମନ୍ୟୁଙ୍କ ରାଧା ପ୍ରଗଲ୍‌ଭ କୃଷ୍ଣଗତପ୍ରାଣା ମଧୁରା, ସରଳା, ରୂପ ଲାବଣ୍ୟବତୀ କିଶୋରୀ । ଅଭିମନ୍ୟୁଙ୍କ କୃଷ୍ଣ ଅପେକ୍ଷା ରାଧା ପ୍ରେମରେ ବେଦନା ବେଶୀ ଓ ବିଳାସ କମ୍ । ଗମ୍ଭୀରତାର ଅଟଳ ଧୈର୍ଯ୍ୟ ନବାନୁରାଗର ଉଦ୍‌ଭ୍ରାନ୍ତ ଲୀଳା ଓ ଶୃଙ୍ଖଳା ମଧ୍ୟରେ ବି ରାଧାଙ୍କର ମାନସିକ ଓ ଆତ୍ମିକ ସ୍ଥିରତା ବିଶେଷଭାବେ ଲକ୍ଷ୍ୟ କରାଯିବା କଥା ।

ଅଭିମନ୍ୟୁଙ୍କ ରାଧା ଚରିତ, ବେଦନାଭରା, ଜୀବନ୍ତ ଭାବୋଦ୍ରେକକାରୀ, ସାତ୍ତ୍ୱିକ ଭାବାପନ୍ନ । କୃଷ୍ଣ ପ୍ରେମସାଗରରେ ନିମଜ୍ଜମାନହୋଇ ଯୋଗୀର ଆସନରେ ବସି, ବୈଦଗ୍ଧ୍ୟର ମୂର୍ତ୍ତିମନ୍ତ ଅବତାର ହେଲେ ମଧ୍ୟ ରାଧା ଚିରନ୍ତନ ପ୍ରେମିକା ରୂପେ ପାଠକକୁ ଅଧିକ ଆକୃଷ୍ଟ କରନ୍ତି । କୃଷ୍ଣନାମ ଶ୍ରବଣରେ ସେହି ବ୍ୟାକୁଳ ବିହ୍ୱଳା ରାଧା ସମ୍ଭୋଗଲାଲସା ପରିତ୍ୟାଗକରି ଏକ ଅତୀନ୍ଦ୍ରିୟ ଜଗତରେ ବିଚରଣ କଲାପରି ମନେହୁଏ । ରାଧାଙ୍କର ଏ ପ୍ରେମ ଏକ ଅନୁଭୂତି କୁଶଳା ନାରୀର ପ୍ରେମ । ଏ ପ୍ରେମରେ ତ୍ୟାଗର ଯେଉଁ ଜ୍ୱଳନ୍ତ ଦୃଷ୍ଟାନ୍ତ ମିଳେ ତାହା ସଚରାଚର ପ୍ରାଣୀ ଜଗତରେ ମଧ୍ୟ ବିରଳ । ଯେଉଁ ପ୍ରେମ ମଣିଷର ସୁଖ ଦୁଃଖ, ଲୁହ ଲହୁ, ହର୍ଷ ବିଷାଦ ଅନୁଭୂତିରେ ସ୍ନିଗ୍ଧ ଓ ମହିମାମଣ୍ଡିତ, ସେହି ପ୍ରେମର ଚିରନ୍ତନ ଉପାସିକା ରାଧା, ଏଇଥିରେ ହିଁ ତାଙ୍କର ଅପୂର୍ବ ଦେବଶ୍ରୀ ପ୍ରକଟିତ ହୋଇଛି ।

